# ମୁଁ ମହାକାଳ ମୁଁ ଦୁର୍ବାର



15

# ମୁଁ ମହାକାଳ ମୁଁ ଦୁର୍ବାର



ଲେଖକ :
ଭୂପେନ ଗୋସ୍ୱାମୀ 

ପ୍ରକାଶକ :
ଜନପ୍ରିୟ ପ୍ରକାଶନ
ବାଙ୍କି ସାହି, କଟକ-୭୫୩୦୦୯



ପ୍ରଥମ ସଂସ୍କରଣ—୧୯୭୨
ଦ୍ୱିତୀୟ ସଂସ୍କରଣ—୧୯




ମୁଦ୍ରଣ :
ରେଖା ପ୍ରେସ୍
ବାଙ୍କି ସାହି, କଟକ-୭୫୩୦୦୯

ମୂଲ୍ୟ :
ତିନି ଟଙ୍କା ମାତ୍ର

Rs. 3-00

ଆଉ, ଦରୱାନ୍‌କୁ କନଷ୍ଟେବଳ ଆଉ ଡାକବେ କାହିଁକି—ମୁଁ ଚଲେ ଯାଉଛି··· କହୁ କହୁ ଆଗନ୍ତୁକ [illegible]ାଇ ନେଇ ବଡ଼ ରାସ୍ତାରେ ବାହାରିଗଲା ।

ପରଦିନ ସୁବ୍ରତ ଫେରିଆସିବା ପରେ ଆଗନ୍ତୁକର କଥା ନରହରିବାବୁ କହିଲେ । ସବୁ ଶୁଣି ସୁବ୍ରତ କହିଲା—ବଦ୍‌ମାସ ଲୋକଟାକୁ ଅଟକାଇ ପୋଲିସରେ ଦେଲେନାହିଁ କାହିଁକି ? ସମ୍ପତ୍ତି ଲୋଭର ମଜା ବେଶ୍ ବୁଝନ୍ତା !

ହସିଲେ ନରହରିବାବୁ ।

କାହାରି ମୁହଁରେ ଶବ୍ଦ ନାହିଁ । ବିକାଶ ଯାହା କହୁଥାଏ ଗମ୍ଭୀର ଆଗ୍ରହରେ ସମସ୍ତେ ଶୁଣୁଥାନ୍ତି ।

ବିକାଶ କହୁଥାଏ—ମାଣ୍ଡ ଗତକାଲି ନରହରି ବାବୁ ତାଙ୍କର ବୈମାତ୍ରେୟ ଭାଇ ରାମହରି ସମ୍ବନ୍ଧରେ ସନ୍ଧ୍ୟାବେଳେ ଯାହାସବୁ କହିଲେ, ପୂର୍ବରୁ ଅବଶ୍ୟ ଏ ସମ୍ବନ୍ଧରେ ଅନେକ କିଛି ମୁଁ ସଂଗ୍ରହ କରିଥିଲି । ନରହରି ବାବୁଙ୍କର କଥାବାର୍ତ୍ତାରୁ ବୁଝିଥିଲି, ତାଙ୍କର ଅତୀତ ଦିନଗୁଡ଼ିକ ଉଜ୍ଜ୍ୱଳ ନଥିଲା, ଅସ୍ପଷ୍ଟ ଅନ୍ଧକାର ଘେରି ରହିଥିଲା ଏବଂ 'ରନ୍ଧୀ' ନରହରି ବାବୁଙ୍କର ନିକଟ ଆତ୍ମୀୟ ଏହା ମୁଁ ତାଙ୍କର ଶୟନ କକ୍ଷରେ ଟଙ୍ଗା ହୋଇଥିବା ଫଟୋରୁ ଜାଣି ପାରିଥିଲି । ମନୁଷ୍ୟର ଅତି—ବୁଦ୍ଧି ଅବଶ୍ୟ ସଜାଗତ ଅନେକ ସମୟରେ ସବୁକିଛି ଭଣ୍ଡୁର କରିପାରେ ! ପ୍ରଥମ ଜୀବନରେ ନରହରି-

ବାବୁ ଅର୍ଥ ଲୋଭରେ ଯେଉଁ ମହାପାପ କରିଥିଲେ, ବୈମାତ୍ରେୟ ଭାଇ ସହିତ ପ୍ରବଞ୍ଚନା, ପରବର୍ତ୍ତୀ ଜୀବନରେ ଏହା ତାଙ୍କର ନିଶାରେ ପରିଣତ ହୋଇଥିଲା। ସବୁଆଡ଼ୁ ନିଜକୁ ରକ୍ଷା-କବଚ ପରି ବୁଦ୍ଧି ଦ୍ୱାରା ଘୋଡ଼ାଇ ରଖିଲେ ସୁଦ୍ଧା ଫଟୋଗ୍ରାଫିକ ଯେ ଅତି ପ୍ରୟୋଜନୀୟ ବସ୍ତୁ ଏହା ସେ ଚିନ୍ତା କରି ନ ଥିଲା। ଦେଖିବାକୁ ଗଲେ ତାଙ୍କ ଅପେକ୍ଷା ଅଧିକ ଧୂର୍ତ୍ତ ଥିଲେ ତାଙ୍କର ଭାଇ ରାମହରି ସାମନ୍ତରାୟ ଅର୍ଥାତ୍ 'ଚଣ୍ଡୀ'। ତେଣୁ ସେ ନରହରିବାବୁଙ୍କର ଦୁର୍ବଳତାର ସୁଯୋଗ ନେଇ ଠିକ୍ ସମୟରେ ଆସି ଜୁଟିଥିଲା। କାରଣ, ସେ ଜାଣେ ପ୍ରତିଶୋଧ ନେବାକୁ ହେଲେ ନରହରିବାବୁଙ୍କର ବିଶ୍ୱାସର ପାତ୍ର ଓ ଅନୁଗତ ହୋଇ ରହିବାକୁ ହେବ ଏବଂ ଏହା ହିଁ ସେ କରିଥିଲା।

କିଏ ତାହାହେଲେ 'ଚଣ୍ଡୀ'ର ଛଦ୍ମବେଶରେ ଥିଲା ? ପଚାରିଲା ରଜତ।

କିଏ ? ସେ ହେଉଛି ନରହରି ବାବୁଙ୍କର ମ୍ୟାନେଜର, ତାଙ୍କର ଦକ୍ଷିଣ-ହସ୍ତ ଓ ପରାମର୍ଶଦାତା ସୁବ୍ରତ ଦାସ।

ଆଶ୍ଚର୍ଯ୍ୟ ! ସମସ୍ତେ ଅସ୍ପଷ୍ଟ ଚିତ୍କାର କରି ଉଠିଲେ।

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ···ବିକାଶ କହିଲା—ତୁମ୍ଭେମାନେ ଭାବିଦେଖ, ସୁବ୍ରତ 'ଚଣ୍ଡୀ' ନହୋଇଥିଲେ କିମ୍ବା 'ଚଣ୍ଡୀ' ଯଦି ସୁବ୍ରତ ନହୋଇଥାନ୍ତା ତାହାହେଲେ ଏପରି ସଦା-ସତର୍କ ପ୍ରହରୀ ବେଷ୍ଟିତ ଜମିଦାରଙ୍କ ଘରକୁ ଅବାଧ ଗତିରେ ଯା-ଆସ କରିପାରନ୍ତା କି ? ଏହା ବ୍ୟତୀତ ଆଉତ' କୌଣସି ଉପାୟ ନ ଥିଲା। ଘଟଣାମାନ ବିଶ୍ଳେଷଣ କରି ମୋ' ମନରେ ସନ୍ଦେହ ଜାଗରିତ ହେଲା ଯେ, 'ଚଣ୍ଡୀ' ଯଦି ନରହରି ବାବୁଙ୍କ ନିକଟରେ ନ ଥାନ୍ତା ତେବେ ସେ କୌଣସି ସମ୍ବାଦ ନରହରି ବାବୁଙ୍କୁ ଦେଇ ପାରନ୍ତା ନାହିଁ ଏବଂ ସେହି ସମ୍ବାଦଗୁଡ଼ିକ ନରହରି ବାବୁଙ୍କ ନିକଟରେ ବିଶ୍ୱାସଯୋଗ୍ୟ ହେବା ମଧ୍ୟ ପ୍ରୟୋଜନ। ତେଣୁ ସନ୍ଦେହ ହୋଇଥିଲା ହୁଏତ' ସେ 'ଚଣ୍ଡୀ'ର ଅନୁଚର କିମ୍ବା ସ୍ୱୟଂ 'ଚଣ୍ଡୀ'। 'ଚଣ୍ଡୀ' ଯେତେବେଳେ ଆସେ ସ୍ତ୍ରୀ ବେଶରେ ଆସେ, ତଥାପି ସେ ଏକାବେଶରେ ଦୁଇଥର କେବେ ଆସି ନାହିଁ। ପ୍ରଥମଥର ନରହରି ବାବୁ କୌଣସି ସ୍ତ୍ରୀ ହେଉଛି ବୋଲି ଯାହା ଅନୁମାନ କରିଥିଲେ, ସୁବ୍ରତ ଆଢୁଆଳରେ ଥାଇ ସେହି ହସ

ହସିଥିଲି । ଦ୍ୱିତୀୟ ଦିନ ରାତିରେ ବୋଧହୁଏ ସେ ସୁବ୍ରତ ବେଶରେ ନରହରି ବାବୁଙ୍କ ସହିତ ଦେଖା କରିଥିଲି । ତୃତୀୟ ଦିନ 'ଚନ୍ଦୀ' ବେଶରେ ଯାଇଥିଲି । ମୁହଁରେ ଏକପ୍ରକାର ପ୍ୟାଡ୍ ରଖି ସେ କଣ୍ଠସ୍ୱର ଅନ୍ୟ ପ୍ରକାର କରିପାରୁଥିଲି—ସୁତରାଂ ନରହରି ବାବୁ ତାକୁ କୌଣସି ପ୍ରକାରେ ସନ୍ଦେହ କରିପାରୁ ନଥିଲେ ।

କ୍ଷଣେକ ପାଇଁ ସ୍ତବ୍ଧତା ଘର ଭିତରେ । ଟିକିଏପରେ ବିକାଶ ପୁଣି ଆରମ୍ଭକଲି—ତୃତୀୟ ଦିନ ନରହରିବାବୁଙ୍କ ଶୟନ କକ୍ଷରେ ଆସି ରିଭଲଭର୍ ନଳରେ 'ଇଥିଲିନ୍' ସ୍ପ୍ରେ କରି ତାଙ୍କୁ ଅଜ୍ଞାନ କରି ଦେଇଥିଲି । 'ଇଥିଲିନ୍' ହେଉଛି 'ହାଇଡ୍ରୋଜେନ୍' 'କାର୍ବନ' ସମ୍ମିଶ୍ରିତ ଏକପ୍ରକାର ଗ୍ୟାସ୍ । ଏହି ଗ୍ୟାସ୍ ସାହାଯ୍ୟରେ 'ଚନ୍ଦୀ' ତାର ଲବୋରେଟରୀରେ, ମୁଁ ଯେତେବେଳେ ପିଲଟିକୁ ନେଇ ପହଞ୍ଚିଲି ସେତେବେଳେ ଅଜ୍ଞାନ କରାଇବା ଲାଗି ଚେଷ୍ଟା କରିଥିଲା, କିନ୍ତୁ କୃତକାର୍ଯ୍ୟ ହୋଇ ପାରିଲାନାହିଁ । ନରହରିବାବୁ ଯେଉଁଦିନ ଅଜ୍ଞାନ ହୋଇଥିଲେ ତାଙ୍କର ଶୟନ କକ୍ଷର ଟେବୁଲ ଉପରେ ଫ୍ଲାୱାର୍ ଭାସ୍‌ରେ କେତେଗୁଡ଼ିଏ ଫୁଲଥିଲା, କିନ୍ତୁ ମୁଁ ତାହା ଶୁଷ୍କ ଅବସ୍ଥାରେ ଥିବା ଦେଖିଲି । ନରହରି ବାବୁ ସୌଖୀନ ବ୍ୟକ୍ତି, ଫ୍ଲାୱାର ଭାସ୍‌ରେ ଶୁଷ୍କ ଫୁଲ ଦେଖି ବୁଝି ପାରିଲି ନିଶ୍ଚୟ କୌଣସି ପ୍ରକାର ଗ୍ୟାସ ପ୍ରୟୋଗ ଦ୍ୱାରା ତାଙ୍କୁ ଅଜ୍ଞାନ କରାଯାଇଥିଲା, ଯେଉଁ ଗ୍ୟାସ୍‌ର ଫୁଲକୁ ଶୁଷ୍କ କରାଇବା ମଧ୍ୟ କ୍ଷମତା ଅଛି । ତେଣୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ସେହି ଫୁଲକୁ ମୁଁ ନେଇ ଆସିଥିଲି ।

ପୁଣି ଥରେ ନିସ୍ତବ୍ଧତା ଘର ଭିତରେ ନଇଁ ଆସିଲା । ବିକାଶକୁ ନୀରବ ରହିବା ଦେଖି ସମସ୍ତେ ଉଦ୍‌ଗ୍ରୀବ ହୋଇ ଉଠିଥାନ୍ତି ପରବର୍ତ୍ତୀ କଥା ଶୁଣିବାପାଇଁ । ନୀରବ ମୁହୂର୍ତ୍ତଗୁଡ଼ିକ ବଡ଼ ଅସହନୀୟ ବୋଲି ମନେହେଉ ଥାଏ ।

ସମସ୍ତଙ୍କୁ ଅତି ଉଦ୍‌ବିଗ୍ନ ହେବା ଦେଖି ବିକାଶ ଧୀରେ ଧୀରେ ପୁଣି ଆରମ୍ଭ କଲା—ଏହାପରେ ଜଗମୋହନ ବାବୁଙ୍କ କଥା ଶୁଣନ୍ତୁ । ଜଗମୋହନ ବାବୁଙ୍କୁ ସ୍ପ୍ରିଂର ପ୍ରଜାପତି ଭିତରେ ଧୁତୁରାର ନିର୍ଯ୍ୟାସ ଦେଇ ତାଙ୍କୁ ଅଜ୍ଞାନ କରା ହୋଇଥିଲା । ଧୂତୁରାରେ ମନୁଷ୍ୟ ଠିକ୍ ଅଜ୍ଞାନ ହୁଏନାହିଁ, ଅଚ୍ଛନ୍ନ

ଅବସ୍ଥାରେ ପଡ଼ି ରହିଥାଏ । ଜ୍ଞାନ ଥାଏ । କିନ୍ତୁ ଅକ୍ଷମ ଅବସ୍ଥା । ପ୍ରଜାପତିଟିକୁ ପରୀକ୍ଷା କରି ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଛି । ଆଉ ମଧ୍ୟ ଆଲୋକ ଦାନକାରୀ ମୂର୍ତ୍ତି ହେଉଛି ଗୋଟିଏ ଶିକ୍ଷିତ ଶିମ୍ପାଞ୍ଜି ।

ଗୋଟିଏ ପୋଷାକରେ ତାକୁ ସଜ୍ଜିତ କରାଇ ସେହି ପୋଷାକ ଉପରେ କେତେଗୁଡ଼ିଏ ଉଜ୍ଜଳ ପୋକ ଗୁଡ଼ି ଦିଆ ହୋଇଥିଲା ଏବଂ ଜନ୍ତୁଟିର ଦେହରୁ ଯେଉଁ ଆଲୋକ ବାହାରୁଥିଲା ତାହାକୁ ଜାନ୍ତବ ଆଲୋକ କୁହାଯାଏ । ଅର୍ଥାତ ଜୁଳୁଜୁଳିଆ ପୋକପରି ଏକପ୍ରକାର ପୋକ ଶିମ୍ପାଞ୍ଜିର ପୋଷାକ ଉପରେ ଗୁଡ଼ି ଦିଆଯାଇଥିଲା । ବର୍ତ୍ତମାନ 'ରଙ୍ଗୀ' ସମ୍ବନ୍ଧରେ ଏକପ୍ରକାର ସବୁ କହିଲି । ସୁବ୍ରତ ସାଧାରଣତଃ ସକାଳ ଓ ଦିପହରବେଳେ ନରହରି ବାବୁଙ୍କ ଅଫିସରେ ଥାଇ କାଗଜପତ୍ର ଦେଖା ଦେଖି କରେ ଓ ଅନ୍ୟାନ୍ୟ ଅଫିସ ସଂକ୍ରାନ୍ତୀୟ କାର୍ଯ୍ୟ କରେ । ରାତିରେ ସେ ତା ଘରକୁ ବା ତା'ର ଲାବରେଟୋରୀକୁ ଆସେ । ତାହାର ମନରେ କାଳେ କୌଣସି ପ୍ରକାର ସନ୍ଦେହ ଜାତ ହୋଇପାରେ ସେଥିପାଇଁ ସେ ଘର ଓ ଲାବରେଟୋରୀ ପୃଥକ ସ୍ଥାନରେ କରିଥିଲା । ଉଭୟ ସ୍ଥାନରେ ଫୋନ ଓ ସହକାରୀ ମୁତୟନ ଥିଲେ, ଯେପରିକି ସହଜରେ ଯୋଗା ଯୋଗ ସ୍ଥାପନ ହୋଇପାରେ ଏହିପରି ବନ୍ଦୋବସ୍ତ ସେ କରିଥିଲା ।

ତା'ପରେ ଶୁଣନ୍ତୁ···ଚେୟାରରୁ ଉଠି ବିକାଶ କହିଲା—ଲାବରେଟୋରୀ ଘରର ସବୁ ଦୁଆରଗୁଡ଼ିକରେ ଅର୍ଥାତ୍ ପ୍ରବେଶ ପଥରେ ସେ ଫଟୋ-ଇଲେକ୍ଟ୍ରିକ ସେଲ ବସାଇ ଥିଲା ଯାହାଦ୍ୱାରା ବାହାରର କୌଣସି ବ୍ୟକ୍ତି ରହସ୍ୟ ଭେଦକରିବା ସହଜ ସାଧ୍ୟ ନୁହେଁ । ସେ ଅତି ବୁଦ୍ଧିମାନ ଏହା ନିଃସନ୍ଦେହ, କିନ୍ତୁ ଘୋର ଆତ୍ମବିଶ୍ୱାସ ହେତୁ ତାର ପତନ ଘଟିଛି ।

ଅଉ କାହାରି କିଛି ଶୁଣିବାର ବାକି ନଥିଲା, ସମସ୍ତେ ଚେୟାର ଛାଡ଼ି ଫେରିବା ଲାଗି ପ୍ରସ୍ତୁତ ହେଲେ । ବିକାଶ ସେମାନଙ୍କୁ ବଳେଇ ଦେବାଲାଗି ସଦର ଫାଟକ ପର୍ଯ୍ୟନ୍ତ ଆସିଲା । ସମସ୍ତେ ବିଦାୟ ନେବାପରେ ଫାଟକଟିକୁ ଆଉଜାଇ ଦେଇ ପକେଟରୁ ସିଗାରେଟ ବାହାର କରି ଅତି ଆରାମରେ ଟାଣିବାକୁ ଲାଗିଲା ।

ମନରେ ଆଜ ଅସରନ୍ତି ଆନନ୍ଦ, ବିରାଟ ସମସ୍ୟାର ସମାଧାନ ପରେ ଆଜ ନିଶ୍ଚିନ୍ତ ହୋଇ ପାରିଛି ସେ ।

ନିଜର ଶୟନକକ୍ଷକୁ ଆସି ପୋଷାକପତ୍ର ବଦଳାଇ ଆରାମ ଚଉକିରେ ବସି ଖଣ୍ଡିଏ ଉପନ୍ୟାସ ନେଇ ପଢ଼ିବାକୁ ଲାଗିଲା । ପଢ଼ୁ ପଢ଼ୁ କେତେବେଳେ ନିଦ ଲାଗିଯାଇଛି ସେ ଜାଣିପାରି ନାହିଁ । ହଠାତ୍ କଣ ଗୋଟିଏ ଶବ୍ଦରେ ନିଦ ତାର ଭାଙ୍ଗିଗଲା । ଘର ଭିତରେ ନିଶ୍ଛିଦ୍ର ଅନ୍ଧକାର, ମୃତ୍ୟୁପରି ରୁହନ ଶୀତଳ ।

ମନେ ମନେ ଭାବିବାକୁ ଲାଗିଲା ବିକାଶ । ତା'ର ଠିକ୍ ମନେଅଛି ଘରର ଆଲୋକ ଜଳାଇ ସେ ବହି ନେଇ ବସିଥିଲା, ପଢ଼ୁ ପଢ଼ୁ ନିଦ ତାକୁ ଲାଗିଯାଇଛି, ତେଣୁ ଆଲୋକ ଲିଭାଇପାରି ନାହିଁ । ଘରେ ଦ୍ୱିତୀୟ ବ୍ୟକ୍ତି ପ୍ରବେଶ କରିବାର ସୁଯୋଗ ମଧ୍ୟ ନାହିଁ, ଯେହେତୁ ପଢ଼ିବାକୁ ବସିବା ପୂର୍ବରୁ ସେ ଶୟନକକ୍ଷର ଦ୍ୱାର ବନ୍ଦକରି ଦେଇଥିଲା । ତେବେ କିଏ କେଉଁ ବାଟେ ଆସି ଠିକ୍ ତା'ର ହାତ ପାଖରେ ଥିବା ସୁଇଚ୍‌ବୋର୍ଡ ସ୍ପର୍ଶ କରି ଘରର ଆଲୋକ ଲିଭାଇ ଘନ ଅନ୍ଧକାର କରିପାରେ ? ଏପରି କରିବାର କି ଉଦ୍ଦେଶ୍ୟ ଆଉ ଥାଇପାରେ ?

ଯେଉଁ ଶବ୍ଦଟିକ ଶୁଣି ନିଦ ତାର ଭାଙ୍ଗିଗଲା ଏହା କି ଶବ୍ଦ । ତସ୍କର, ନା କେଉଁ ଆଗନ୍ତୁକର ? ଆଗନ୍ତୁକ ଯଦି ହୋଇଥାଏ, ନିଶ୍ଚୟ ସେ ବିଶିଷ୍ଟ ଆଗନ୍ତୁକ ।

ସତର୍କଭାବେ ଚାରିଆଡ଼େ ଆଖି ବୁଲାଇ ଆଣିଲା ବିକାଶ । ନା, କିଛିତ ସନ୍ଦେହଜନକ ବୋଲି ମନେ ହୁଏନା । ଅନ୍ଧକାର କ୍ରମେ ଆଖି-ସୁହା ହୋଇ ଆସିଥାଏ । କୃଷ୍ଣବର୍ଣ୍ଣ ଯବନିକା ଧୀରେ ଧୀରେ ଅପସରି ଯାଉଥାଏ ।

ଉତ୍କଣ୍ଠ ହୋଇ ପରବର୍ତ୍ତୀ କ୍ରିୟା ଦେଖିବା ପାଇଁ ଅପେକ୍ଷା କଲା ବିକାଶ । କେତୋଟି ସ୍ତବ୍ଧ ମୁହୂର୍ତ୍ତ ଅତିବାହିତ ହେବାପରେ ବିକାଶର ଦୃଷ୍ଟି ତୀକ୍ଷ୍ଣ ହୋଇ ଉଠିଲା । ନିଶ୍ଚିତ ହେବାଲାଗି ଆଖି ଦୁଇଟିକୁ ଦୁଇ ହାତରେ ମଳି ଗବାକ୍ଷ ଆଡ଼େ ଚାହିଁବା ମାତ୍ରେ ସର୍ବାଙ୍ଗ ଉତ୍ତେଜନାରେ ଥରିବାକୁ ଲାଗିଲା ।

ଗୋଟିଏ ମୂର୍ତ୍ତି ଝରକାର ରେଲିଂ ଧରି ଭିତରଆଡ଼େ ହାତ ଗଳାଇ ସୁଇଚ୍‌ବୋର୍ଡ ପର୍ଯ୍ୟନ୍ତ ହାତଟିକୁ ଯେପରି ଆଗେଇ ଆଣୁଛି । ବାଧାଦେବା ଉଚିତ ନୁହେଁ, ଏହି ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ ସେଇ ମୂର୍ତ୍ତି ସୂକ୍ଷ୍ମ ପାଉଡ଼ର-ପରି କେତେଗୁଡ଼ିଏ ଚୂର୍ଣ୍ଣ ଘର ଭିତରେ ଅଜାଡ଼ି ଦେଇ ଧୀରେ ଧୀରେ ତଳକୁ ଓହ୍ଲାଇବାକୁ ଚେଷ୍ଟାକଲା । ବିକାଶ ସୁଇଚ ବୋର୍ଡରେ ହାତଦେବା ପୂର୍ବରୁ ମୁଣ୍ଡ ତା'ର ଚକ୍ରାକାରରେ ଘୂରିବାକୁ ଲାଗିଲା, କିଏ ଯେପରି ଜୋରକରି ତାକୁ ତଳେ ପକାଇ ଦେବାକୁ ଚେଷ୍ଟାକରୁଛି ।

ଅନ୍ଧକାର, ଆଖିର ପତା ଦୁଇଟି ଉପରେ କିଏ ଯେପରି ଚୁପି ଧରିଛି ବିରାଟ ଖଣ୍ଡିଏ ପଥର—ବିରାଟ ପର୍ବତ ପରି ବିରାଟ ପଥର ଖଣ୍ଡିକକୁ ଆଡ଼େଇ ଅନ୍ଧକାର ଦୂର କରିବାର ଶକ୍ତି ଯେପରି ତାର ନାହିଁ । ଅବଶ ହୋଇ ଆସିଲା ହାତଗୋଡ଼, ସର୍ବାଙ୍ଗରେ ଦାରୁଣ କ୍ଳାନ୍ତି···କ୍ଳାନ୍ତଶ୍ରାନ୍ତ ଆଖିପତାରେ ନିଦ୍ରାର ମୋହାଞ୍ଜନ । କିଏ ଯେପରି ସଯତ୍ନରେ ଫୁଲର ଶଯ୍ୟାରେ ଆଣି ଶୁଆଇ ଦେଉଛି ।

ଦାରୁଣ ଯନ୍ତ୍ରଣାରେ ମୁଣ୍ଡର ଶିରା ଦୁଇଟା ଯେପରି ଛିଣ୍ଡି ଛିଣ୍ଡି ଯାଉଥାଏ । ଅତି କଷ୍ଟରେ ଆଖି ମେଲିକରି ଚାହିଁଲା ବିକାଶ । ଘରେ ଆଲୋକ ନାହିଁ, କିନ୍ତୁ ଅନ୍ଧକାର ମନେ ହୁଏନା । ଗୋଲାପି ଆଭାରେ ଶଯ୍ୟନ କକ୍ଷଟି ସ୍ୱପ୍ନପୁରୀ ପରି ଦେଖା ଯାଉଥାଏ । ବିକାଶ ବେଶ୍ ବୁଝି ପାରିଲା କାଲରାତ୍ରି ପ୍ରଭାତର ରକ୍ତିମ ସୂର୍ଯ୍ୟାଲୋକ ଗବାକ୍ଷ ବାଟଦେଇ ଘର ଭିତରେ ଆସି ପଡ଼ୁଛି । ପ୍ରତି ମୁହୂର୍ତ୍ତରେ ରଙ୍ଗର ପରିବର୍ତ୍ତନ ମଧ୍ୟ ଘଟୁଛି ।

ଟିକିଏ ଗ୍ଲାସ୍ ଜମ୍ପା କଫି ହେଲେ ଏ' ଯନ୍ତ୍ରଣାର କିଛିତ ଉପଶମ ହୁଅନ୍ତା । କିନ୍ତୁ ଧଳା ଶଯ୍ୟାରୁ ଉଠି ଭୃତ୍ୟକୁ ଡାକିବାର ଶକ୍ତି କାହିଁ ? ଧୀରେ ଧୀରେ ତକିଆ ମୁଣ୍ଡ ଉଠାଇବାଲାଗି ଚେଷ୍ଟା କଲା ବିକାଶ । ଅତି ସାବଧାନତାରେ ଶଯ୍ୟା

ପାଖକୁ ଆସିଲା । କିନ୍ତୁ ଗୋଟାଏ ଅବଲମ୍ବନର ଆଶ୍ରୟ ନେବା ଉଦ୍ଦେଶ୍ୟରେ ଚାରିଆଡ଼େ ଆଖି ବୁଲାଇବାକୁ ଲାଗିଲା ।

ପାଇଛି, ତାର ଆଖି ଆଗରେ ମୂର୍ତ୍ତିମନ୍ତ କରୁଣାମୟୀ ପରି ପଲଙ୍କ ବାଡ଼ାରେ ଝୁଲୁଥିବା ଭ୍ରମଣ-ଯଷ୍ଟି ଖଣ୍ଡିକ ନିଜର ଅସ୍ତିତ୍ୱକୁ ପ୍ରଚାର କରୁଛି ଯେପରି ।

ସତର୍କ ପଦକ୍ଷେପରେ ଆଗେଇ ଆସି ପଲଙ୍କ ବାଡ଼ାରୁ ଯଷ୍ଟି ଖଣ୍ଡିକ ନେଇ ତାର ସାହାଯ୍ୟରେ ଦୁଆର ପାଖରେ ପହଞ୍ଚି କୌଣସି ପ୍ରକାରେ କିଳିଣି ଖୋଲିବା ପରେ ଭୃତ୍ୟର ନାମ ଧରି ଡାକିଲା ! କିନ୍ତୁ ନିଜର କଣ୍ଠସ୍ୱର ନିଜେ ଶୁଣି ଚମକି ପଡ଼ିଲା ସେ । ଏହିସ୍ୱର ଯେ ଦୁଆରବନ୍ଧ ଟପି ସେପେଇ ଘର-ପର୍ଯ୍ୟନ୍ତ ଯାଇନଥିବ ଏହା ସେ ସ୍ପଷ୍ଟ ବୁଝିପାରିଲା । ନିରୁପାୟ ଅବସ୍ଥାରେ ଫେରୁ ଫେରୁ ହଠାତ୍ କୋଠରି ତଳେ ଦୃଷ୍ଟି ପଡ଼ିବା ମାତ୍ରେ ମନରେ କୌତୁହଳ ଉଦ୍ରେକ ହେଲା । ଖଣ୍ଡିଏ ଧଳା ଲଫାଫା ପଡ଼ିଥିବା ଦେଖି ଯଷ୍ଟି ସାହାଯ୍ୟରେ ଆଗେଇବା ଲାଗି ଚେଷ୍ଟାକରି ସୁଦ୍ଧା କୋଣ ପର୍ଯ୍ୟନ୍ତ ଯାଇ ନପାରି ଅଗତ୍ୟା ଶଯ୍ୟା ଉପରେ ଆସି କ୍ଳାନ୍ତ ଶ୍ରାନ୍ତ ଶରୀର ଲମ୍ବାଇ ଦେଇ ଭୃତ୍ୟର ଆଗମନ ଅପେକ୍ଷାରେ ଆଖି ମୁଦି ପଡ଼ିରହିଲା ।

ବେଶି ସମୟ କିନ୍ତୁ ଅପେକ୍ଷା କରିବାକୁ ପଡ଼ିଲା ନାହିଁ, ଭୃତ୍ୟର ପଦ-ଶବ୍ଦରେ ଆଖି ଖୋଲି ଚାହିଁଲା । ଚା' କପ୍‌ଟିକୁ ଟି-ପୟ ଉପରେ ରଖିଦେଇ ପ୍ରସ୍ଥାନୋଦ୍ୟତ ହେବାବେଳେ ବିକାଶ ଅଙ୍ଗୁଳି ସଙ୍କେତ ଦ୍ୱାରା ଗବାକ୍ଷ ତଳେ ପଡ଼ିଥିବା ଲଫାଫା ଖଣ୍ଡିକ ଆଣିବା ଲାଗି ଇଙ୍ଗିତରେ କହିଲା ଭୃତ୍ୟକୁ । ଲଫାଫା ଖଣ୍ଡିକ ହାତକୁ ବଢ଼ାଇ ଦେଇ ନିଜ କାର୍ଯ୍ୟରେ ଲୋକଟି ଚାଲିଗଲା ।

ଚା, ପାନକଲେ ଶରୀରର କ୍ଳାନ୍ତି କେତେକ ପରିମାଣରେ ଲାଘବ ହୋଇ ଆସିଲା । ଉତ୍ତେଜିତ ସ୍ନାୟୁ ଶିଥିଳ ଶରୀରରେ ନବଶକ୍ତି ଦାନକଲା ଯେପରି । ଏଥର ପତ୍ର ଖଣ୍ଡିକ ଖୋଲି ପଢ଼ିବାକୁ ଲାଗିଲା ସେ ।

—ପ୍ରିୟ ବିକାଶବାବୁ !

ଆପଣ ମୋର ସହୃଦ ଅଭିନନ୍ଦନ ଗ୍ରହଣ କରିବେ । ଆପଣଙ୍କ ବ୍ୟତୀତ 'ଚକ୍ର'ର ରହସ୍ୟଚକ୍ର ଭେଦ କରିବା କାହାରି ପକ୍ଷରେ ସମ୍ଭବ ହୁଅନ୍ତା ନାହିଁ ।

ଏହା ମୁଁ ଆଗରୁ ଜାଣିଥିଲି । ଏଣୁ ଆପଣଙ୍କ ପ୍ରତି ମୋର ଶ୍ରଦ୍ଧା ଯେ କମିଛି ଏହା ପରଜନ୍ମରେ ସୁଦ୍ଧା ମୁଁ ସ୍ୱୀକାର କରିବି । କିନ୍ତୁ ଆପଣଙ୍କୁ ନିଶ୍ଚିନ୍ତ ହେବାର ଅବସର ମୁଁ ଦେଇ ପାରୁନାହିଁ, ଏଥିପାଇଁ ମୁଁ ଦୁଃଖିତ । ଆପଣ ହୁଏତ ମନେ କରିଥିବେ 'ଚର୍ଚ୍ଚା'ର କାର୍ଯ୍ୟକଳାପ ଏଇଠାରୁ ଶେଷ ହୋଇଛି, କିନ୍ତୁ ଆପଣ ଜାଣି ମନେ କରନ୍ତୁ ଯେ, ଯିଏ ଏତେବଡ଼ ପ୍ରତିଷ୍ଠାର ଅଧିକାରୀ, ଜୀବନର ସର୍ବସ୍ୱ ଦେଇ ବିଜ୍ଞାନର ଚୂଡ଼ାନ୍ତ ନିଷ୍ପତ୍ତି କରିଥିଲା—ଏତେ ଶୀଘ୍ର ସ୍ୱ-ପ୍ରତିଷ୍ଠାକୁ ସେ ବଳି ଦେଇପାରେ ? ଅତଏବ ସ୍ୱୀକାର କରୁଛନ୍ତି ନିଶ୍ଚୟ ଯେ ସ୍ୱତନ୍ତ୍ର ଜୀବନ—ଅର୍ଥାତ୍ 'ଚର୍ଚ୍ଚା'ର ପତନ କିମ୍ବା ପରାଜୟ ଘଟିନାହିଁ । ହୁଏତ ଏପରି ଦିନ ଆସିପାରେ, ପୁଣି ଦୁହିଁଙ୍କର ମିଳନ ଘଟିବା ଆଦୌ ବିଚିତ୍ର ନୁହେଁ । ଆଜି ଯେତେବେଳେ ଆପଣମାନେ ମୋ ସମ୍ବନ୍ଧରେ ଆଲୋଚନାରତ ଥିଲେ ସେତେବେଳେ ମୁଁ ଆପଣମାନଙ୍କ ପାଖରୁ ଦୂରରେ ନଥିଲି, ଆପଣଙ୍କ ବନ୍ଧୁ-ମାନଙ୍କର ମୋ' ପ୍ରତି କି ଧାରଣା ସେତେବେଳେ ଜନ୍ମିଥିଲା ଏହା ବୁଝି ନ ପାରିଲେ ମଧ୍ୟ ଏତିକି ବୁଝିଥିଲି ଯେ—ମୋ ପ୍ରତିଭାକୁ ସମସ୍ତେ ସ୍ୱୀକୃତି ଜଣାଇଛନ୍ତି । ଏହି ସ୍ୱୀକୃତିର ପ୍ରେରଣା ମୋତେ ଉଦ୍ଦୀପିତ କରୁଛି । ତେଣୁ ବିଜ୍ଞାନର ଶେଷ ପର୍ଯ୍ୟାୟରେ ପହଞ୍ଚିବାର ବାସନା ନେଇ ନୂତନ ଆବିଷ୍କାର ଲାଗି ପ୍ରସ୍ତୁତ ହେଉଛି ମୁଁ । ଆଶୀର୍ବାଦ କରନ୍ତୁ ଯେପରି କୃତକାର୍ଯ୍ୟ ହୁଏ ।

—ମୁଁ ଅତି ଦୁଃଖିତ ପ୍ରକାଶବାବୁ, ଆପଣଙ୍କୁ ଅକାରଣରେ ଶାରୀରିକ କଷ୍ଟ ଦେଲି । ପତ୍ରବାହକର କୌଣସି ଅପରାଧ ନାହିଁ । ତା' ପ୍ରତି ନିର୍ଦ୍ଦେଶ ଥିଲା, ଆପଣଙ୍କର ଶୟନ କକ୍ଷରେ ପତ୍ର ଖଣ୍ଡିକ ଯେପରି ପହଞ୍ଚାଇ ଦିଏ । ଯଦି ପ୍ରୟୋଜନ ମନେକରେ ଆପଣଙ୍କୁ ଅଜ୍ଞାନ କରିଛି କି ନା ତାହା ଅବଶ୍ୟ ମୁଁ ଜାଣେନା । ଯଦି କରିଥାଏ ଆପଣଙ୍କର ଆଶଙ୍କାର କୌଣସି କାରଣ ନାହିଁ —ଚବିଶି ଘଣ୍ଟା ମଧ୍ୟରେ ଆପଣ ସମ୍ପୂର୍ଣ୍ଣ ସୁସ୍ଥତା ଲାଭ କରିବେ ।

—ବର୍ତ୍ତମାନଠାରୁ ମୋର ସନ୍ଧାନ ଲାଗି ବ୍ୟସ୍ତ ହେବେ ନାହିଁ । ଧୈର୍ଯ୍ୟଧରି କିଛିଦିନ ଅପେକ୍ଷା କରିବେ—ନିବେଦନ, ଇତି—

ଆପଣଙ୍କର ପରିଚିତ ।

ପାଠାନ୍ତେ ପ୍ରକାଶର ମନେ ହେଲା ବିଜ୍ଞାନର କର୍ମମତ ଯେପରି ଏହି-ଠାରୁ ଶେଷ ନୁହେଁ— ଆହୁରି ଅନେକ କିଛି ଅଛି......

ମୁଗ୍ଧ ଦୃଷ୍ଟିରେ ଖେଳ ଦେଖୁଥାଏ ଲଳିତା ।

ତାର କଲେଜ ସହପାଠିନୀ ଊର୍ମିଳା ତାକୁ ବହୁତ ଅନୁରୋଧ କରି ଆଜି ଆଣିଛି ଫୁଟବଲ୍ ଖେଳ ଦେଖାଇବା ପାଇଁ । ଦୁହେଁ ହଷ୍ଟେଲରେ ଥାଆନ୍ତି । ଫୁଟବଲ୍ ପ୍ରତି ଲଳିତାର ଆଗ୍ରହ ନାହିଁ, କିନ୍ତୁ ଫୁଟବଲ୍ ସିଜନ ପଡ଼ିଲେ ଊର୍ମିଳାର ଗୋଡ଼ ଆଉ ତଳେ ଲାଗେନା । ଭଲ ଖେଳ ଥିଲେ ଦିନକ ଆଗରୁ ସହପାଠିନୀମାନଙ୍କ ଆଗରେ ଟିମ୍ ଓ ଖେଳାଳିଙ୍କର ଗୁଣ କୀର୍ତ୍ତନ ବଖାଣି ହୁଏ । ଏତେ ସେ ବକର ବକର ହୁଏ ଯେ ତା ଉପରେ ବନ୍ଧୁମାନେ ଚିଡ଼ନ୍ତି, କେହି କେହି ମୁରୁକି ହସା ମାରି ତା' ପାଖରୁ ଅଲଗା ହୋଇ ଯାଆନ୍ତି ।

ସେତିକି ନୁହେଁ । ଯେଉଁଦିନ ଏରିୟାନ୍ ଟିମ୍‌ର ଖେଳଥାଏ ସେ ଖିଆ-ପିଆ ଭୁଲିଯାଏ । ଏରିୟାନର ସେଣ୍ଟର ଫରୱାର୍ଡ ଶଙ୍କରଦାସର ନାମଟି ବାରମ୍ବାର ତା ମୁହଁରୁ ବାହାରେ । ଚମତ୍କାର ଖେଳେ ଶଙ୍କର । ଚମତ୍କାର ଚେହେରା ଶଙ୍କରର ଇତ୍ୟାଦି ବିଶେଷଣଗୁଡ଼ାକ ବ୍ୟବହାର କରେ ସବୁବେଳେ ।

ଲଳିତା ପୂର୍ବରୁ ଯେଉଁ ଝିଅଟି ତା ରୁମରେ ରହୁଥିଲା, ଏହି କଥା ଜାଣି ଶୁଣି ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହି ସେ ରୁମ୍ ବଦଳାଇଛି, ଲଳିତା ଆସିଛି ଏବେ ।

ପଢ଼ାପଢ଼ି ବେଶ୍ ଭଲ କରେ ଊର୍ମିଳା ।

ଊର୍ମିଳା ଓ ଲଳିତା ପ୍ରାୟ ସମବୟସ୍କା । ଉଭୟଙ୍କ ମଧ୍ୟରେ ବେଶ୍ ଭାବ ଜମି ଉଠିଲା ଏକା ରୁମ୍‌ରେ ଥିବା ହେତୁ ।

ମନେପଡ଼େ ଲଳିତାର ।

ଯେଉଁଦିନ ପ୍ରଥମେ ସେ ସାତ ନମ୍ବର ରୁମ୍‌କୁ ଆସିଲା, ତାକୁ ଦେଖି ଊର୍ମିଳା ହସିଲା । ନିର୍ଦ୍ଦୋଷ ହସଟାର ଅର୍ଥ ଯେପରି ଲଳିତାକୁ ସେ ପାଖରେ ପାଇବାଲାଗି ଆଶା କରୁଥିଲା ବହୁତ ଦିନରୁ—ବର୍ତ୍ତମାନ ପାଇ ଅନ୍ତରର ହର୍ଷ ଓ ଉତ୍ତେଜନାକୁ ଚାପି ରଖିବାର ବ୍ୟର୍ଥ ଚେଷ୍ଟା କରୁଛି ।

ଲଳିତା ମଧ୍ୟ ଊର୍ମିଳାର ସମ୍ପୂର୍ଣ୍ଣ ଅପରିଚିତ ନୁହେଁ । ସହପାଠିନୀ ଯେତେବେଳେ କ୍ଲାସରେ ଦେଖିଛି; ସୁନ୍ଦର ମୁହଁ ଓ ସୁଡୋଲ ଦେହବଲ୍ଲରୀ ଆକୃଷ୍ଟ କରିଛି ତାକୁ । ବିଶେଷତଃ କି ସୁନ୍ଦର ଭ୍ରୂ ଦୁଇଟି ଊର୍ମିଳାର । ଯେତେବେଳେ ସେ କଥା କୁହେ ଏହି ଭ୍ରୂ ଦୁଇଟି ବିଚିତ୍ର ଭଙ୍ଗୀରେ ନୃତ୍ୟ କରେ । ସେପରି ନିଜର ବେଶଭୂଷା ପ୍ରତି ଅତ୍ୟନ୍ତ ସଜାଗ ଊର୍ମିଳା । ସାଦା ବ୍ୟତୀତ ରଙ୍ଗିନ ପରିଚ୍ଛଦ ସେ ପସନ୍ଦ କରେନା । ଅନ୍ୟ କାହାରି ରଙ୍ଗିନ୍ ଶାଢ଼ୀ କମ୍ବା ବ୍ଲାଉଜ ଦେଖିଲେ କୁତ୍ସିତ ଇଙ୍ଗିତ କରେ ।

ଲଳିତା ନୂଆ ହୋଇ ଆସି ନିଜ ସିଟ୍ ସଜାଡୁଥାଏ । ବିଛଣାଟିକୁ ପରିପାଟୀ କରି ସଜାଡ଼ିବାର ଚେଷ୍ଟା କରୁଥାଏ, ଏ ପାଖରେ ନିଜ ଶଯ୍ୟାରେ ଅର୍ଦ୍ଧଶାୟିତ ଅବସ୍ଥାରେ ଥାଇ ଊର୍ମିଳା ଦେଖୁଥାଏ—ଭ୍ରୂ କୁଞ୍ଚଉଥାଏ ।

ହଠାତ୍ ତାର କଣ ମନେ ହେଲା କେଜାଣି, ଶଯ୍ୟାରୁ ଉଠି ଆସି ଲଳିତା ହାତରୁ ବେଡ୍ କଭରଟା ଛଡ଼ାଇ ନେଇ କହିଲା—ଉଠ୍, ଉଠ୍ ବିଛଣା ତୋତେ ସଜାଡ଼ି ଆସେ ? ଘଣ୍ଟାଏ ହେଲା ଚଦରଟାକୁ ଉଠଉଛୁ ପୁଣି ସଜାଡ଼ି ପକଉଛୁ···କହୁ କହୁ ନିଜେ କ୍ଷିପ୍ର ହାତରେ ସଜାଡ଼ି ଦେଲା । ଝରକା ପାଖରେ ଟେବୁଲ ଓ ଟେବୁଲ ଉପରେ ବହି, ଖାତା, କଲମ, ଇଙ୍କ୍ ସଜାଡ଼ି ରଖିଲା । ବିଛଣା ତଳେ ସୁଟ୍‌କେଶ୍‌ଟାକୁ ରଖି ଦେଇ କହିଲା—ଦେଖିଲୁ, କେମିତି ହେଲା ?—

ଲଳିତା ମୁଗ୍ଧ ଦୃଷ୍ଟିରେ ଚାହିଁଲା ଊର୍ମିଳା ଆଡ଼େ ।

ଟେବୁଲ୍ ଉପରୁ ଗିଲାସଟାକୁ ନେଇ ଟ୍ୟାପ୍‌ରୁ ପାଣି ନେଇ ପିଇସାରି କହିଲା—ଊର୍ମିଳା - ହଷ୍ଟେଲଟା ତ' ଘର ନୁହେଁ । ଏଠି ପରିଷ୍କାର ପରିଚ୍ଛନ୍ନ ଥିବା ଦରକାର । ତିନିବର୍ଷ ହେଲା ମୁଁ ହଷ୍ଟେଲରେ ରହି ଆସିଲି ଏଇ ସାତ ନମ୍ବର ରୁମ୍‌ରେ । କେତେ ଆସିଲେ କେତେ ଗଲେ, କିନ୍ତୁ କେହି ବଦନାମ ଦେଇ ପାରିବେ ନାହିଁ ଯେ ଊର୍ମିଳାଟା ଅରଣୀ ବୋଲି । ଏଇଠି ଥା —ଦେଖିବୁ···

ଦଦ···ଲଳିତା କହିଲା, ଆଉ କଣ କହିବାକୁ ଯାଉଥିଲା, ଉର୍ମିଳା ଚିତ୍କାର କରି ଉଠିଲା—ଚୁପ···ମୁଁ ତୋର ଦଦ! କାହିଁକି ଉର୍ମି ବୋଲି ଡାକି ପାରୁନାହୁଁ? ବୟସରେ ତ' ଆମେ ସମାନ, ଦଦ ହେଲୁ କୁଆଡ଼ୁ?

ଲଳିତା ହସି ଚୁପି କହିଲା—ତା' ନୁହେଁ ଯେ, ଏ ଘରେ ତ' ତୁମେ ପୁରୁଣା, ସେଇଥିପାଇଁ 'ଦଦ' ବୋଲି କହିଲି; ତୁମେ ଯଦି କିଛି ନଭାବ ତାହାହେଲେ ନାଁ ଧରି ଡାକିବି···

ବେଶ୍ କଥା କହୁ ତ' ଜାଣୁ। କଣ ଖାଇଲୁ?

ଘରୁ ଖାଇ ଆସିଥିଲି। ପଛକୁ ଜଳଖିଆ ତ' ହଷ୍ଟେଲରୁ ମିଳିବ···

ମିଳିବ···ତାଚ୍ଛଲ୍ୟ ସ୍ୱର ଉର୍ମିଳାର।···ମିଳିବ ତ' ମେଞ୍ଚାଏ ହାଲୁଆ। ଦ'ଟା ଦିନରେ ମଣିଷ ଆରେ ଝଡ଼ିଯିବ।

ଲଳିତା ଚାହିଁଲା ଉର୍ମିଳାଆଡ଼େ।

ମନେ ମନେ ହିସାବ କଲା ସେ। ଦୁଇଦିନ ଏଠାକାର ହାଲୁଆ ଖାଇ ଯଦି ମଣିଷ ଝଡ଼ିଲା ତାହା ହେଲେ ଉର୍ମିଳା ତାର ସ୍ୱାସ୍ଥ୍ୟଟିକୁ ବାଗେଇ ରଖିଛି କପରି?

ତା ମନକଥା ଉର୍ମିଳା ବୋଧହୁଏ ବୁଝିପାରିଲା। କହିଲା—କ୍ୟାଣ୍ଟିନଟା ପାଖରେ ଯାହା ହେଉ ରକ୍ଷାକରିଛି। ନଥିଲେ ତ' ଶରୀରର ବାରଟା ବାଜି ଯାଇଥାନ୍ତା। ଚାଲ ଆଜି କେଣ୍ଟିନରେ ଖାଇବା···

ଦ୍ୱିଧାନ୍ୱିତ କଣ୍ଠରେ କହିଲା ଲଳିତା — କିନ୍ତୁ ହଷ୍ଟେଲରେ ନିୟମ···

ଧେତ୍‌ତେରି! ବିରକ୍ତ କଣ୍ଠସ୍ୱର ଉର୍ମିଳାର···ନିୟମ ଗୋଟାଏ କଣ? ଜାଣୁ ଏ କେଣ୍ଟିନ୍ କା' ପାଇଁ ଏଠି ହୋଇଛି। କୁମାରୀ ଉର୍ମିଳା ପାଇଁ। ଡି-ପି-ଆଇ କ୍ଷିତିଶ ଚନ୍ଦ୍ର ଦାସଙ୍କ ନାତୁଣୀ ପାଇଁ···ଛାତିରେ ହାତମାରି ବିଜୟୀ ଗର୍ବରେ କହିଲା ଉର୍ମିଳା ଦାସ।

ତୁମେ ତାହେଲେ···

ସଟ୍‌ଅପ୍‌…ପୁଣି ଚତ୍କାର କରି କହିଲା ଉର୍ମିଳା । ତୁମେ ନୁହେଁ—
—ତୁ' ବୋଲି କହିବୁ । ତୁମେ ଆପଣ ଏଗୁଡ଼ାକ ମୋର ଶତ୍ରୁ ।
ଫରମାଲିଟିର ଧାର ଧାରେ ନା ମୁଁ । ଶୁଣ, ଅର୍ଡର ଅଛି—ଯେଉଁମାନେ
ହଷ୍ଟେଲରେ ଜଳଖିଆ ନଖାଇବେ ସେମାନେ କ୍ୟାଣ୍ଟିନ୍‌ରେ ଖାଇ ପାରନ୍ତି ।
କନ୍ଥ ବଗଡ଼ା ଭାତ, ପାଣିପାଣିଆ ଡାଲି, ଦରସିଝା ତରକାରି ଏ ବେଳା
ଗିଳିବାକୁ ହେବ । ଚାଲ ଯିବା, କ୍ୟାଣ୍ଟିନରେ ଆଜ ତୋର ଗୋଡ଼
ପଡ଼ୁ…

ଆପତ୍ତି କରି ପାରିଲା ନାହିଁ ଲଳିତା । ଅନୁସରଣ କଲା ଉର୍ମିଳାକୁ ।
ଉଭୟ କ୍ୟାଣ୍ଟିନରେ ବସି ଖାଇଲେ । ଖିଆପିଆ ପରେ ଉର୍ମିଳା କହିଲା—ମୁଁ
କଫି ଖାଇବ, ସ୍ୱଂ-ଟା ମୋର ଦେଢ଼ସୁର…

ଲଳିତା ହସିଲା ।

ତୋର ତ' ନୁହେଁ, ତୁ ଖା'…

ପାନପରେ ପାନାହାରର ମୂଲ୍ୟ ଦେବାକୁ ଯାଉଥିଲା ଲଳିତା, ବାଧା
ଦେଇ ପର୍ସ ଖୋଲି ଉର୍ମିଳା କହିଲା—ଆଜ ମୋର ପାଳି…

ଦୁହିଁଙ୍କର ବନ୍ଧୁତା କ୍ରମେ କ୍ରମେ ବଢ଼ିଲା । ଠିକ୍ ସମୟରେ ପାଠପଢ଼ା,
ଠିକ୍ ସମୟରେ କ୍ୟାଣ୍ଟିନ୍‌କୁ ଯିବା ସବୁ ଧାରାବାହିକଭାବେ ଚାଲିଥାଏ ।
ପଢ଼ାପଢ଼ି ସମୟରେ କେହି କାହାରିକୁ ଡ଼ିସଟର୍ବ କରନ୍ତି ନାହିଁ । ହଷ୍ଟେଲ
ଆଇନ ମଧ୍ୟ ମାନି ଚଳନ୍ତି ଉଭୟେ ।

ଫୁଟ୍‌ବଲ ସିଜନ୍ ଆସିଲେ ।

ସଙ୍ଗେ ସଙ୍ଗେ ଉର୍ମିଳାର ପରିବର୍ତ୍ତନ ପ୍ରକାଶ ପାଇଲା । କପରି
ଅନ୍ୟମନସ୍କ, କପରି ଉତ୍ତେଜିତ ମନେ ହେଲା ତାକୁ ।

ସୁନ୍ଦବନ ରାତିର ଘଟଣା ।

ଖିଆପିଆ ପରେ ଉଭୟେ ଆଲୁଅ ଲିଭାଇ ଶଯ୍ୟାକୁ ଆସିଲେ ।
ଲଳିତା ଶଯ୍ୟାପାଖରୁ ପାଞ୍ଚହାତ ଦୂରରେ ଉର୍ମିଳାର ଶଯ୍ୟା । ଡାକିଲା
ଉର୍ମିଳା ଲଳିତାକୁ ।

କଣ କରୁଛୁ ? ଡର ମାଡ଼ୁଛି…

ଡର ? ମୁଁ ଡ଼ି-ପି-ଆଇର ନାତୁଣୀ, ପୁଲିସ ଇନସପେକ୍ଟରର ଝିଅ ମୋର ପୁଣି ଡର ? କହୁଥିଲି, କାଲି ତାହେଲେ ତୁ ଘରକୁ ଯିବୁ ?

ହଁ, କାଲି ଶନିବାର । ରବିବାରଟା ରହି ସୋମବାର ସକାଳେ ଆସିବି । ଅନେକ ଦିନ ହେଲା ଯାଇନାହିଁ, ସେଥିପାଇଁ ବୁଲିଆସେ...

ନଗଲେ ଚଳିବ ନାହିଁ ?

କାହିଁକି କଣ ଜରୁରୀ କାମ କିଛି ଅଛି ?

ଜରୁରୀ ନୁହେଁ ଯେ, ଏ ସିଜନର ପ୍ରଥମ ଖେଳଟା କାଲି ଆରମ୍ଭ ହୋଇଛି...

ସିଜନର ଖେଳ ?—ଲଳିତାର ବିସ୍ମିତ କଣ୍ଠସ୍ୱର ।

ଏଇଟା ଫୁଟବଲ ସିଜନ । କାଲିଠୁ ଖେଳ ଆରମ୍ଭ ହେବ । ହ୍ୱାଇଟିଂ ଭରସେସ୍ ଏପାଲେ । ଦ'ଟାଯାକ କଡ଼ା ଟିମ୍ । ଖେଳଟା ମନ୍ଦ ହେବ ନାହିଁ ।

ତୁ କାହିଁକି ଇଣ୍ଟରେଷ୍ଟେଡ଼ ? —ଫୁଟବଲ ଖେଳରୁ ତୁ କଣ ପାଇବୁ ? —କହିଲି ଲଳିତା ।

କଥାଟା କହିପକାଇ ଲଳିତାର ମନେ ପଡ଼ିଲା ସୁସ୍ମିତା କଥା .। ଆଉ ଜଣେ ସହପାଠିନୀ ସୁସ୍ମିତା । ସୁସ୍ମିତା ତାକୁ ଦିନେ ପଚାରିଥିଲା— ଉର୍ମିଳା ଫୁଟବଲ କଥା ତୋତେ କହି ନାହିଁ ?

ଫୁଟବଲ ! ସେ କଣ ?—ବିସ୍ମିତ କଣ୍ଠରେ ପଚାରିଲା ଲଳିତା ।

କହି ନାହିଁ, ତାହାହେଲେ ?—ଶୁଣିବୁ, ଶୁଣିବୁ, ସିଜନ୍ ଅଛି...

ଆଉ କିଛି ନକହି ଅର୍ଥପୂର୍ଣ୍ଣ ହସ ହସି ସୁସ୍ମିତା ଆଡ଼େଇ ହୋଇ ଯାଇଥିଲା । କଥାଟାରେ କି ଗୁଢ଼ ରହସ୍ୟ ଅଛି, ଉର୍ମିଳାକୁ ପଚାରିବ ପଚାରିବ ବୋଲି ପଚାରି ପାରିନାହିଁ ଲଳିତା, କାଳେ ଉର୍ମିଳା ମନରେ କିଛି ଭାବିବ । ହୁଏତ 'ଫୁଟବଲ ଖେଳ' ନେଇ ତାର ଦୁର୍ବଳତା ଉପରେ ଆଘାତ ପାଉଛି ବୋଲି ମନେକରି ତା' ସହିତ ଅଯଥା ତର୍କ ଯୁଦ୍ଧ କରିବ ।

ଊର୍ମିଳା ମୁହଁରୁ ଫୁଟବଲ କଥା ଶୁଣି ଚମକି ପଡ଼ିଥିଲା ସେ ।

ଜାଣି ନାହୁଁ ?—କହିଲା ଊର୍ମିଳା···ଭରି ଇଣ୍ଟରେଷ୍ଟିଂ ଗେମ୍ । ବଲ୍‌କୁ ନେଇ ଖେଳାଳିମାନେ ଯେତେବେଳେ ଏ ପାଖରୁ ସେ ପାଖକୁ ଦଉଡ଼ୁଥିବେ କି ସୁନ୍ଦର ଦେଖାଯାଏ ସେତେବେଳେ । କୌଣସି ପକ୍ଷ ସ୍କୋର କଲେ ତ ଦର୍ଶକର ଆନନ୍ଦରେ ଅବର୍ଣ୍ଣନୀୟ ।

ଏହା ତ' ପୁରୁଷମାନଙ୍କର ଖେଳ ? ଲଳିତା କହିଲା ।

ହାୟରେ କପାଳ ! ତୁ ବର୍ତ୍ତମାନ କେଉଁ ଜଗତରେ ଅଛୁ, ଲଳିତା ! ପୁରୁଷ ଯାହା ପାରେ, ଆମେ ନାରୀ ହୋଇ ପାରିବା ନାହିଁ ଏ ସଙ୍କୀର୍ଣ୍ଣତା ଏ ପର୍ଯ୍ୟନ୍ତ ରଖିଛୁ ! ଆମର ଦେଖିବାର ଅଧିକାର ଟିକକ ମଧ୍ୟ ତୁ ଅସ୍ୱୀକାର କରୁଛୁ । ଆମେ ଆନନ୍ଦ ଟିକିଏ ପାଇବାରୁ ମଧ୍ୟ ପୁରୁଷମାନେ ବଞ୍ଚିତ କରିବେ ଆମକୁ ? କାଲି ତୁ ଘରକୁ ଯା, ଗୋଟାଏ ଭଲ ଟିମ୍ ତା ୨୨ ଶଖ ଦିନ ଖେଳୁଛି, ଏସିଆଟିକ୍ କ୍ଲବ । ତାଙ୍କର ପ୍ରତିଦ୍ୱନ୍ଦୀ ପୁଣି ଆପୋଲୋ ଇଲେଭେନ୍ । ଶଙ୍କର ଦାସକୁ ଦେଖିବୁ ସେଦିନ···

ଶଙ୍କର ଦାସ କିଏ ? ତୋର ସେଲେବ୍ରିଟି ?

ସେଲେବ୍ରିଟି ନୁହେଁ । ହି ଇଜ ଦି ଜୁଏଲ ଅଫ୍ ଦି ଏସିଆଟିକ୍ କ୍ଲବ । ଦେଖିବୁ କିପରି ବିଜୁଳି ପରି ତାର ଗତି । ତାପରି ସେଣ୍ଟର ଫରୱାର୍ଡ କୌଣସି ଟିମ୍‌ରେ ନାହିଁ । ଯେମିତି ଚେହେରା, ସେମିତି ହ୍ୟାଣ୍ଡସମ ।

ଆଚ୍ଛା, ଦେଖିବି ତୋ ସାଙ୍ଗରେ···

ତାପରେ ଉଭୟେ ଶୋଇ ପଡ଼ିଲେ ।

ଲଳିତା ମନେ କରିଥିଲା ପାହିବା ମାତ୍ରେ ଊର୍ମିଳା ଆଗେ ତା'ର ଶୁଭ ଶୁଭ ସମ୍ବାଦ ନେବ । କିନ୍ତୁ ତାକୁ ଗାଲରେ ହାତ ଦେଇ ବସିଥିବା ଦେଖି ବିସ୍ମିତ କଣ୍ଠରେ ପଚାରିଲା—କଣ ହୋଇଛିରେ, ଊର୍ମି !

ଶଙ୍କର ବୋଉଠାରୁ ଫେରିନାହିଁ···କ୍ଷୀଣ କଣ୍ଠରେ କହିଲା ଊର୍ମିଳା ।

ମନେ ମନେ ହସିଲା ଲଳିତା । ଟେବୁଲଟାକୁ ସଜାଡ଼ୁ ସଜାଡ଼ୁ କହିଲା—ସେ ନଫେରିଲା ତ' ତୋର କଣ ଗଲା ?

କଣ କହୁଲୁ ?—ଚହିଁକ ଉଠିଲା ଊର୍ମିଳା ।...କେଡ଼େ ବଡ଼ ଖେଳଟା ମାଟି କରିଦେଲା ଜାଣୁ ? ଆଜି ଶ୍ୟାଲେଞ୍ଜ ଫୁଲ୍ ହୋଇଥାନ୍ତା । ଖେଳ ଦେଖିବାପାଇଁ ଲୋକଗୁଡ଼ାକଙ୍କର କେତେ ଆଶା ସବୁତ' ମାଟି କରି ଦେଲା ଶଙ୍କରଟା । ବମ୍ବେରେ କି ଗୋଟାଏ ବଡ଼ ମ୍ୟାଚ ହେଉଛି, ଏସିଷ୍ଟାନ୍ ଯାଇଛି ଖେଳିବାକୁ । କାଲି ଫେରିଥାନ୍ତେ, ଖେଳଟା ଆଜି ଏଠାରେ ହୋଇଥାନ୍ତା, କିନ୍ତୁ ସେଠାକାର ମ୍ୟାଚରେ ଡ୍ର ରହିବାରୁ ଅଟକି ଯିବାକୁ ହେଲା ।

ଚାଲ, କ୍ୟାଣ୍ଟିନରୁ ବୁଲି ଆସିବା...ଊର୍ମିଳାର କଥାକୁ ଚାପା ଦେବାପାଇଁ କହିଲା ଲଳିତା ।

ଆଉ କ୍ୟାଣ୍ଟିନ୍ !—ହତାଶ ସ୍ୱରରେ କହିଲା ଊର୍ମିଳା—ଖାଇବାକୁ କଣ ଆଉ ଇଚ୍ଛା ଅଛି ? ଆଜି ଭାତ ଗଣ୍ଡାକ ସୁଦ୍ଧା ପେଟ ଭିତରକୁ ଯାଇ ପାରିଲା ନାହିଁ ।...

ତାର ଭାବଭଙ୍ଗୀ ଦେଖି ବହୁକଷ୍ଟରେ ହସ ଚାପିଲା ଲଳିତା । ଚଟି ଦ'ଟା ଗୋଡ଼ରେ ଗଳାଇ ଊର୍ମିଳାର ହାତଧରି ଟାଣିଲା ନେଇ ଯିବାପାଇଁ ।

ଶ୍ଲଥ ପଦରେ ଊର୍ମିଳା ଚାଲେ ଲଳିତା ସାଙ୍ଗରେ ।

କ୍ୟାଣ୍ଟିନ୍‌ରେ କିନ୍ତୁ ଊର୍ମିଳାର କୌଣସି ପରିବର୍ତ୍ତନ ଲକ୍ଷ୍ୟ ହେଲା ନାହିଁ । ସଦା ଚଞ୍ଚଳା ଚପଳ ଚଟୁଳ ହାସ୍ୟମୟୀ ଊର୍ମିଳା ଗୋଟାଏ ନିର୍ଜୀବ ବସ୍ତୁପରି ବସିଲା ଖାଇବା ଟେବୁଲ ପାଖରେ । ଖାଇବାର ରୁଚି ତାର ନାହିଁ ଯେପରି । ଅନ୍ୟ ଯେଉଁମାନେ କ୍ୟାଣ୍ଟିନରେ ଥିଲେ ସେମାନେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ଊର୍ମିଳାର ନୀରବତା ଦେଖି । ଊର୍ମିଳାଆଡ଼େ ଚାହିଁ ନିଜ ନିଜ ମଧ୍ୟରେ ନୀରବ ସଙ୍କେତ ବିନିମୟ ହେଲା, କିନ୍ତୁ ସେଥିପ୍ରତି ଊର୍ମିଳାର ଭ୍ରୂକ୍ଷେପ ନାହିଁ ।

ଜଳଖିଆ ସେ ନାମମାତ୍ର ସ୍ପର୍ଶ କଲା, ତାର ଅତି ପ୍ରିୟ ପାନୀୟ ଅଧେ ପାନ କରି ଛାଡ଼ି ଦେଲା । ଲଳିତାର ମନେ ହେଲା ଊର୍ମିଳା ଯେପରି ଅତି ଦୁର୍ବଳ ହୋଇ ଯାଇଛି । ଅଦ୍ଭୁତ ଫୁଟବଲ ନିଶା ଝିଅଟାର ।

ଶଙ୍କର ଦାସ କିଏ ?

ତାର ଶରୀରଟିକୁ ନୁହେଁ ବୋଲି କହୁଛୁ, ତେବେ କଣ ଲଗି ଲୋକଟା ପାଇଁ ପାଗଳିନୀ ସେ ।

ପ୍ରେମର ଛନ୍ଦ ଅଛି ବୋଲି ତ ମନେ ହୁଏନା ।

କେବେ ହେଲେ ଘଣ୍ଟିଏ ଚିଠି କିମ୍ବା କେହି ସୁରୁପବନ୍ଧୁ ଉର୍ମିଳା ସହିତ ଦେଖା କରିବାର କେହି ଦେଖି ନାହାନ୍ତି । ଉର୍ମିଳାର ଉଛଳ ଯୌବନରେ କାହାର ସ୍ପର୍ଶ ବାଜିଥିବା ମନେ ହୁଏନା । ପରିଧେୟ ବସ୍ତ୍ରରେ ଦାଗଥିବା ଦେଖା ଯାଇନାହିଁ କେବେ ।

ତେବେ କଣ ! —

ଉର୍ମିଳାର ଚିନ୍ତା ପୂର୍ଣ୍ଣମାତ୍ରାରେ ଲଳିତାକୁ ଚିନ୍ତାନ୍ୱିତା କଲା ।

ଶେଷରେ ଲଳିତା ସ୍ଥିର କଲା—ଶଙ୍କର ଦାସର ଖେଳକୁ ଅନ୍ୟମାନେ ଯେପରି ପ୍ରଶଂସା କରନ୍ତି, ତାଙ୍କର ଅଗଣିତ ଗ୍ରାହକମାନଙ୍କ ମଧ୍ୟରୁ ଉର୍ମିଳା ଜଣେ । ଖେଳ ପ୍ରେମୀ ଉର୍ମିଳା—ଗୋଟାଏ ରକମ ନିଶାରେ ନିଜକୁ ବୁଡ଼ାଇ ଦେଇଛି । ପୁଣି ହୁଏତ ଦିନେ ଶଙ୍କର ଦାସ ଅପେକ୍ଷା ଭଲ ଖେଳାଳିକୁ ଦେଖିଲେ ଶଙ୍କର ଦାସର କଥା ଭୁଲିଯିବ । ଦର୍ଶକମାନଙ୍କର ଏଇ ତ ଅଭ୍ୟାସ ।

ସେଦିନ ରାତିରେ ଆଉ ବହି ନେଇ ବସିଲା ନାହିଁ ଉର୍ମିଳା । ମୁହଁ ଘୋଡ଼ାଇ ଶୋଇଲା । ମଝିରେ ଛଟପଟ ହେଉଥାଏ' କଡ଼ ଲେଉଟାଉ ଥାଏ କ'ଣ ଗୋଟିଏ ଯନ୍ତ୍ରଣା ଯେପରି ଅନୁଭବ କରୁଥାଏ ଭିତରେ ଭିତରେ ।

ଲଳିତାର ମଧ ପଢ଼ାପଢ଼ିରେ ମନ ଲାଗିଲା ନାହିଁ । ଦି-ତିନି ଥର ଡାକ ପୁଛା ଯେତେବେଳେ ଉର୍ମିଳା ପାଖରୁ କୌଣସି ଉତ୍ତର ପାଇଲା ନାହିଁ ଚେୟାରରୁ ଉଠିଆସି ଧୀରେ ଧୀରେ ତାର ଶଯ୍ୟା ପାଖକୁ ଆସି ଦେହରେ ହାତ ବୁଲାଉ ବୁଲାଉ ଡାକିଲା—ଉର୍ମି …

ଉର୍ମିଳା କୌଣସି ଉତ୍ତର ଦେଲା ନାହିଁ । ଆଉ ଥରେ ଡାକିବାକୁ ହେଲା ଲଳିତାକୁ । ବୋଧହୁଏ ଆଉଁସୁ ଆଉଁସୁ ହାତର ଟିପଟା ଟିକିଏ ଜୋରରେ ଲାଗିଥିଲା ଉର୍ମିଳା ଅଙ୍ଗରେ । ଅଙ୍ଗଟି ବୋଧହୁଏ ଜନ୍ମାଙ୍ଗର

କୌଣସି ଏକ ସ୍ଥାନରେ, ସେହି ସ୍ପର୍ଶରେ ହିଁକିଏ ଚମକି ଉଠିଥିଲା ଊର୍ମିଳା ନିଶ୍ଚୟ । ଶଯ୍ୟାରୁ ଉଠି ବସିଲା । ହସି ହସି କହିଲା—ଏ କଣ କଲୁ ?—

ଅଜାଣତରେ ଆଙ୍ଗୁଳିଟା ବାଜିଗଲା···ଲଜ୍ଜିତ ହସ ହସି କହିଲା ଲଳିତା । ···ମନଟା ଖରାପ କରି ରଖିଛୁ କାହିଁକି ? ଖେଳଟା ବନ୍ଦ ହୋଇ ଗଲା ବୋଲି ?

ଜାଣି ଜାଣି ଏବେ ଖେଳୁଛୁ କାହିଁକି ?

ତୁ କଣ ଖେଳ ଦେଖିବା ପାଇଁ ବ୍ୟସ୍ତ ହେଉଥିଲୁ ।

ଆଉ କଣ ପାଇଁ ? —ବିସ୍ମିତ କଣ୍ଠସ୍ୱର ଊର୍ମିଳାର ।

କହିଲେ ତ' ରାଗିବୁ, କଥାରେ ଅଛି—

ସବୁ କହିବ, ମରମ କହିବ ନାହିଁ···ପାଦ ପୂରଣ କଲା ଊର୍ମିଳା··· ମରମଟା କଣ ଶୁଣେ ?

ଶଙ୍କର ହାସ···

ଇଡ଼ିୟଟ୍···ପୁଣି ଶୋଇ ପଡ଼ିଲା ମୁହଁ ବୁଲାଇ ଊର୍ମିଳା । ଲଳିତା ଯେପରି ଡାକିଲା ଆଉ ସେ ଶୁଣିଲା ନାହିଁ । ଲଳିତା ନିଜ ଶଯ୍ୟାକୁ ଆସି ଆଲୁଅଟା ଲିଭାଇ ଦେଇ ଶୋଇ ପଡ଼ିଲା । ତାର ମଧ୍ୟ ଆଉ ପଢ଼ାପଢ଼ି କରିବାକୁ ମନ ହେଲା ନାହିଁ । ଭାବିଲା, ଶଙ୍କର ଦାସର କଥା କହି ବୋଧହୁଏ ଊର୍ମିଳାର ମନରେ ସେ ଦୁଃଖ ଦେଇଛି । ଏକଥା ନ କହିଥିଲେ ତ' ଚଳିଥାନ୍ତା···

ବୋଧହୁଏ ହିଁକିଏ ତନ୍ଦ୍ରା ଲାଗିଯାଇଥିଲା ଲଳିତାକୁ, ହଷ୍ଟେଲର ଘଣ୍ଟା ଶବ୍ଦ ଶୁଣି ନିଦ ତାର ଭାଙ୍ଗିଗଲା । ଆଲୁଅଟାକୁ ଜଳାଇ ଦେଇ ଦେଖିଲା ଊର୍ମିଳା ଶଯ୍ୟା ଉପରେ ଉଠି ବସିଛି—ଆଲୁଅ ଜଳିବା ଦେଖି ଚାହିଁଲା ଲଳିତା ଆଡ଼େ । କହିଲା—ଯା, ଖାଇବୁ ଯା—

ତୁ କଣ ଯିବୁ ନାହିଁ ?

ଭୋକ ନାହିଁ···

ଉର୍ମି ! ଆଁ—ଆଜି ଖେଳ ନାହିଁ ଯେ ଦିନ ପରେ ତ' ହେବ । ତୋର ଶଙ୍କର ଦାସ ତ' ଦେଶ ଛାଡ଼ି ଯାଉନାହିଁ—ଆ ଖାଇବୁ···

ଏକପ୍ରକାର ଜୋର କରି ଲଳିତା ଉର୍ମିଳାକୁ ଧରି ନେଇଗଲେ ।

ଉଭୟେ ଖାଇସାରି ଶଯ୍ୟାରେ ପଡ଼ିଲେ । ଲଳିତା ମନେ ମନେ ଭାବିବାକୁ ଲାଗିଲା—ଜୀବନରେ ସେ କେବେ ଫୁଟବଲ ମ୍ୟାଚ୍ ଦେଖିନାହିଁ । ଖେଳ ଦେଖିବା ନିଶା ଅନେକଙ୍କର ଅଛି ସେ ଜାଣେ । ହଷ୍ଟେଲକୁ ଆସିବା ପୂର୍ବରୁ ସେ ଦେଖିଛି ତାର ଶ୍ରେଷ୍ଠ ଭାଇ ରଜତ ବଡ଼ ଖେଳପ୍ରେମୀ । କ୍ଲାସ ଟେନ୍‌ରେ ପଢ଼ୁଛି, ସ୍କୁଲ ଟିମର ପ୍ଲେୟାର ସେ; ତେବେ ସ୍କୁଲ୍ ଟିମ୍‌ର ଖେଳ ନଥିଲେ ଅନ୍ୟ ଖେଳ ଦେଖିବା ଲାଗି ସେ ଯାଏ । ଶ୍ରେଷ୍ଠ ହେଉ, ଅଥବା ବଡ଼ ମ୍ୟାଚ ହେଉ—ବର୍ଷା ପଡ଼ୁ, କମ୍ପା ଝଡ଼ ହେଉ, ତାର ଯିବାର କଥା ।

ସିଜନ୍ ଟାଇମରେ ତାର ପଢ଼ାପଢ଼ି ବନ୍ଦ । ସାଙ୍ଗସାଥି ବନ୍ଧୁବାନ୍ଧବଙ୍କୁ ନେଇ ଫୁଟବଲ ସମ୍ବନ୍ଧରେ ତାର ଗଳ୍ପ ଚାଲିଥାଏ । ଘରେ ମଧ୍ୟ ସମସ୍ତଙ୍କ ସାଙ୍ଗରେ କଥାବାର୍ତ୍ତା କରୁ କରୁ ଠିକ୍ କଥାର ମୋଡ଼ ବୁଲି ଆସେ ଫୁଟବଲ ଖେଳଆଡ଼କୁ । ସମସ୍ତେ ବିରକ୍ତ ହୁଅନ୍ତି, ସେ କିନ୍ତୁ ଛାଡ଼େନା । ଜଣଜଣ କରି ଧରି ବୁଝେ ଏଗାରଜଣ ଖେଳାଳିର ପୋଜିସନ ଫିଲ୍ଡ଼ର କେଉଁଠି କେଉଁଠି । ସେମାନଙ୍କର କର୍ତ୍ତବ୍ୟ କଣ···କିପରି ଡ଼ିଫେନ୍ସ ନେବେ, କିପରି ପାସ୍ ଦେବେ ଇତ୍ୟାଦି ବୁଝାଏ ବିଶଦ ଭାବରେ ।

ଦିନେ ଏକ ଅଦ୍ଭୁତ ଘଟଣା ଘଟିଥିଲା ।

ଖିଆପିଆ ସାରି ସମସ୍ତେ ଶୋଇଛନ୍ତି, ହଠାତ୍ ରଜତର ଚିତ୍କାର ଶୁଣାଗଲା—ମୋ ପାଖକୁ ପାସ ଦେ' ଜଲ୍ଦି ! ଇସ୍ସେସ ସଟ୍ ମାର୍···

ତା'ପରେ—

ତା'ପରେ ରଜତର ଚିତ୍କାରଟା ଆର୍ତ୍ତ ଚିତ୍କାର ପରି ଶୁଣାଗଲା—ମରିଗଲି, ମରିଗଲି ।

ଘର ଲୋକମାନଙ୍କର ନିଦ ଭାଙ୍ଗିଲା । କଣ ହେଲା ରଜତ ଦେଖିବାକୁ ଆସିଲେ ତାର ଶୟନ କକ୍ଷକୁ । ଘରର ଲାଇଟ୍ ଜଳାଇବା ପରେ

ଦେଖାଗଲେ ଯନ୍ତ୍ରଣାରେ ମୁହଁଟାରେ ଅସଂଖ୍ୟ କୁଞ୍ଚନ ଦେଖା ଦେଉଛି —ଯୋଢାଯାଏ ଥରୁଛି ସେ । ବାଁ ଗୋଡ଼ର ତଳ ପାଦକୁ ହାତରେ ଚୁପି ଧରିଛି ।

ରଜତର କଥାଗୁଡ଼ିକ ସମସ୍ତେ ଶୁଣି ପାରିଥିଲେ । ତେଣୁ କାହାରି ବୁଝିବାକୁ ବାକି ରହିଲା ନାହିଁ ଯେ, ସ୍ୱପ୍ନ ଦେଖି ବଲ ମାରିବା ବେଳେ ଝରକାକୁ ସେ ଖୁବ୍ ଜୋରରେ ଗୋଇଠା ମାରିଛି । ବଲକୁ ଯେତେ ଜୋରରେ କିକ୍ ମାରିବାକୁ ହୁଏ ଠିକ ସେତିକି ଜୋରରେ । ମୋଟା ଲୁହା ରେଲିଂ ବାଜି ଗୋଡ଼ଟାକୁ ଆଘାତ କରିଛି—ହାଡ଼ ଭାଙ୍ଗିଛି କି ନା କେଜାଣି ।

ସାଙ୍ଗେ ସାଙ୍ଗେ ଡାକ୍ତରଙ୍କୁ ଫୋନ କରାଗଲା । ଡାକ୍ତର ଆସି ପ୍ରାଥମିକ ଚିକିତ୍ସାର ବ୍ୟବସ୍ଥା କରି କହିଲେ—ସକାଳେ ହସପିଟାଲକୁ ନେବାକୁ ହେବ ।

ସକାଳେ ତାର ପାଦର ଅବସ୍ଥା ଦେଖି ସମସ୍ତେ ଭୟ କଲେ । ବେଙ୍ଗପରି ଫୁଲିଛି ପାଦଟା, ଆଣୁଯାଏ ଫୁଲର ପ୍ରକୋପ ବିସ୍ତାରିତ ହୋଇଛି ।

ଏକ୍ସରେ ଇତ୍ୟାଦିରେ ଦୁଇମାସ ଲାଗିଲା ସମ୍ପୂର୍ଣ୍ଣ ଭଲ ହେବାପାଇଁ । ହସପିଟାଲ ବେଡ଼ରେ ଶୋଇ ରଜତ ସ୍ୱପ୍ନ ଦେଖୁଥାଏ ଜାଗ୍ରତ ଓ ନିଦ୍ରିତ ଅବସ୍ଥାରେ ଫୁଟବଲ ମ୍ୟାଚ । ବେଳେବେଳେ ତନ୍ଦ୍ରାଘୋରରେ 'ଗୋଲ—ଗୋଲ' ଆଉଟ୍, ପେନାଲ୍ଟି କିକ, ଅଫ୍ସାଇଡ୍ ଓ ଫାଉଲ ଇତ୍ୟାଦି କହିବାର ଡାକ୍ତର ଓ ନର୍ସମାନେ ଶୁଣିଛନ୍ତି । ତାକୁ ସାନ୍ତ୍ୱନା ଦେଇଛନ୍ତି ଅନେକ ପ୍ରକାରରେ । ଭଲ ହୋଇ ଆସିବା ପରେ ଫୁଟବଲ ସିଜନ୍ ଶେଷ ହୋଇଛି । କି ଅବଶୋଷ ରଜତର । ଲଳିତା ତାକୁ କେତେ ଥଟ୍ଟା କରିଛି ଏଥିପାଇଁ ।

ଏଇତ କଣ ଅପେକ୍ଷା ଯାହା ହଉ, ଯାହା ମରୁଆଲ୍ କରେ ଠିକ୍ ମାତାଲ୍ ପରି ।

ଉର୍ମିଳା ଶଯ୍ୟାଆଡ଼େ ଚାହିଁଲା ଲଳିତା ! ଅନ୍ଧକାର ଘର ମଧ୍ୟରେ କିଛି ଦେଖା ନ ଗଲେ ମଧ୍ୟ ଉର୍ମିଳାର କୌଣସି ସୋର ଶବ୍ଦ ନ ଶୁଣିଲେ ସୁଦ୍ଧା ଲଳିତା ବୁଝି ପାରିଲା ସେ ଶୋଇ ନାହିଁ । ଭାବୁଛି ଫୁଟବଲ ମ୍ୟାଚ କଥା, କିମ୍ବା ଶଙ୍କର ଦାସଙ୍କୁ ।

କହିବ ନାହିଁ, କେବେହେଲେ କହିବ ନାହିଁ ଉର୍ମିଳା ଶଙ୍କର ଦାସ ସହିତ ତାର କି ସମ୍ବନ୍ଧ । ଶଙ୍କର ଦାସ ଯେଉଁଦିନ ତା' ସହିତ ଖେଳିବ ସେଦିନ ଦେଖିବାକୁ ଯିବ । ଯଦି କିଛି ଆଗ୍ରହ ପାଏ ।

ଲଳିତାକୁ ନିଦ ଲାଗିଗଲା ।

ଉର୍ମିଳା ସ୍ୱାଭାବିକ ଦେଖାଗଲା କିଛିଦିନ ।

ଦିନେ ସକାଳବେଳା ଲଳିତା ବିଛଣାରୁ ଉଠି ଦେଖିଲା ଉର୍ମିଳା ବିଛଣାରେ ନାହିଁ । ଆଶ୍ଚର୍ଯ୍ୟ ହେଲା ଲଳିତା । ଉର୍ମିଳା କୌଣସି ଦିନ ଲଳିତା ଆଗରୁ ଉଠେନା । ତାହାହେଲେ ଆଜି ଉଠି ସେ କେଉଁଆଡ଼େ ଗଲା ?

ମୁହଁ ଧୋଇବା ପାଇଁ ଟ୍ୟାପ ପାଖକୁ ଯାଉଛି, ଗୋଟିଏ ଗୀତର ସ୍ୱର ଗୁଣୁ ଗୁଣୁ କରି ଗାଉ ଗାଉ ଗାଧୋଇ ଆସୁଛି ଉର୍ମିଳା ରୁମକୁ ।

ଗୀତର ସ୍ୱରଟି ବେଶ୍ ଭଲ ଲାଗିଲା ଲଳିତାକୁ । ଯାଉ ଯାଉ ଅଟକି ଠିଆ ହୋଇଗଲା ଲଳିତା ହାତରେ ପେଷ୍ଟ ଓ ବ୍ରସ୍‌ଧରି । ଉର୍ମିଳା ତାକୁ ଆଡ଼େଇ ଘର ଭିତରକୁ ଆସିଲା । ପଛକୁ ଫେରି ଚାହିଁଲା ଲଳିତା । ଉର୍ମିଳା କପଟ କ୍ରୋଧରେ କହିଲା—ଦେଖୁଛୁ କ'ଣ, କବାଟକୁ ଆଉଜାଇ ଦେ'—ଲୁଗା ଛାଡ଼ିବି ଜାଣୁନା ? ଶୀତରେ ଥରୁଛି ଦେଖୁନୁ ?

ଦୁଆରଟାକୁ ଆଉଜାଇ ଦେଲା ଲଳିତା । ଓଦା ଲୁଗାଟାକୁ ତଳେ ପକାଇ ଦେଇ ସୁଟ୍‌କେସ୍‌ରୁ ପରିଷ୍କାର ସାୟା ବ୍ଲାଉଜ ଓ ଶାଢ଼ୀ ବାହାର କରିବାକୁ

ଲଗିଲ । ଲଳିତା ଏକ ଦୃଷ୍ଟିରେ ଦେଖୁଥାଏ ତାକୁ । କି ସୁନ୍ଦର ଦେହ ବଳୟ ଉର୍ମିଳାର । ଜଟୋଲ ଗୋଖୁତନୁ । କୁମ୍ଭ ଦୁଇଟିର ଗଠନ ଯଦି କୌଣସି ପୁରୁଷ ଦୃଷ୍ଟିରେ ପଡ଼େ ସେ ପାଗଳ ହୋଇଯିବ ।

ଉର୍ମିଳା କିନ୍ତୁ ଏସବୁ ପ୍ରତି ସଚେତନ ନୁହେଁ । କ୍ଷିପ୍ର ହାତରେ ଲୁଚାପଟା ପିନ୍ଧି ନେଇ ହାତ ଦର୍ପଣଟିକୁ ନେଇ ମୁଣ୍ଡର ବାଳଗୁଡ଼ାକ ସଜାଡ଼ି ନେଲ । ସରସ୍ୱତୀ ପରି ସୁନ୍ଦର ଦେଖା ଯାଉଛି ଲଳିତା ।

ମୁଁ ଆସୁଛି, ଭୟନାହିଁ—ବାହାରକୁ ଯାଉଛି ବୋଲି ସୁପରି-ଟେନେ୍‌ଡ଼େଣ୍ଟଙ୍କର ଅନୁମତି ନେଇ ଯାଉଛି । ଆଜି ତ' ରବିବାର । ଡେରିରେ ଖିଆପିଆ ହେବ ।······

ତୁ କେତେଦୂର ଯାଉଛୁ କି ?···ମୃଦୁ କଣ୍ଠରେ ପଚାରିଲା ଲଳିତା ।

ଯାଉଛି ଟିକେଟ କରିବାକୁ—

ଆଜି ବୋଧହୁଏ ଏସିୟାନ ଖେଳୁଛି ?

ହଁ-ରେ ଏସିୟାନ ଓ ସ୍ପୋର୍ଟିଂ କ୍ଲବ । ସ୍ପୋର୍ଟିଂ କିଛି କମ ନୁହେଁ । ସ୍ୱାକୁବ୍ ଶଙ୍କର ଦାସ ପରି ନହେଲେ ମଧ୍ୟ ଖେଳରେ ତାର ସୁନାମ ଅଛି ।

ମୁଁ ଟିକଏ ଯାଆନ୍ତି ?—ସୁପରିନ୍‌ଟେଣ୍ଡେଣ୍ଟ ଛାଡ଼ିବେ କି ନାହିଁ କେଜାଣି···

ଯିବୁ ?—ଅତ୍ୟନ୍ତ ସ୍ୱଚ୍ଛ କଣ୍ଠସ୍ୱର ଉର୍ମିଳାର । ।···ସୁପରିନ୍‌ଟେନ୍‌ଡେଣ୍ଟ, କେମିତି ନ ଛାଡ଼ିବେ ଦେଖିବି ।—ତାହାହେଲେ ତୋ ପାଇଁ ଖଣ୍ଡିଏ ଟିକେଟ୍ ଅଣିବି ?

ରହ, ମୁଁ ମୁହଁଟା ଧୋଇ ଅସେ—ପଇସା ଦେବି···

ଯା' ମୁହଁ ଧୋଇବୁ । ପଇସା ମୋ ପାଖରେ ଅଛି ।—

ସ୍ଲିପର ଦୁଇଟା ଗୋଡ଼ରେ ଗଳାଇ ଘରୁ ବାହାରିଲେ ଉର୍ମିଳା । ଲଳିତା ନିତ୍ୟକର୍ମ ଶେଷ କରିବାକୁ ଗଲେ । କ୍ୟାଣ୍ଟିନ୍‌ରେ ଖାଇବା ଅଭ୍ୟାସ ତାର ଅଛି । କ୍ୟାଣ୍ଟିନ୍‌କୁ ଆସି କିନ୍ତୁ ଏକା ବସି ଖାଇବାକୁ ମନ ବଳିଲ ନାହିଁ । କିନ୍ତୁ ଖାଇବାକୁ ତ' ହେବ । ସାମାନ୍ୟ କିଛି ଖାଇ ରୁମକୁ ଆସି

କଣ ପିନ୍ଧି ଆଜି ସେ ଖେଳ ଦେଖିବାକୁ ଯିବ ସୁଟ୍‌କେସ ଖୋଲି ଦେଖିବାକୁ ଲାଗିଲା ।

ଊର୍ମିଳାର ପସନ୍ଦ ହେବ କି ନା ସେଇ ଶାଢ଼ୀଟା ସେ ବାହାର କରିଛି ପିନ୍ଧି ମ୍ୟାଚ ଦେଖିବାକୁ ଯିବ ବୋଲି । ଅନୁମତି ପାଇଁ ଚିନ୍ତା ନାହିଁ । ଊର୍ମିଳା ତାହା କରିପାରିବ ।

ପ୍ରାୟ ଦେଢ଼ଘଣ୍ଟା ପରେ ଊର୍ମିଳା ଆସି ପହଞ୍ଚିଲା । ବେଶ୍ ଖୁସି ଖୁସି ଲାଗୁବ । ଲଳିତା ତା ଅପେକ୍ଷାରେ ଥିଲା । ଚପଲ ଦୁଇଟାକୁ ଖଟତଳକୁ ପେଲିଦେଇ ଖଟଟାରେ ବସିପଡ଼ି କହିଲେ—ବ୍ଲାକ ଦେବାକୁ ପଡ଼ିଲା । ପଡ଼ୁ, ବସ୍ତୁରୀ ଯେଉଁ ଭିଡ଼ ଭିତରେ ପଶି ଆଣିଛି—ଖୁବ୍ ଧନ୍ୟବାଦ ତାକୁ । ଫିମେଲମାନଙ୍କ ପାଇଁ ସ୍ପୋର୍ଟଦଲ ଆସୋସିଏସନ ଗୋଟାଏ ଅଲଗା କାଉଣ୍ଟର ଯେ କାହିଁକି କରୁନାହାନ୍ତି...ଫିମେଲ ତ' କିଛି କମ ହୁଅନ୍ତି ନାହିଁ ।

କେତେ ବ୍ଲାକ ନେଲା...ପଚାରିଲା ଲଳିତା ।

ଖଣ୍ଡକରେ ୨୫ ପଇସା...କିଛି ଖାଇଛୁ...

ହଁ, କ୍ୟାଣ୍ଟିନକୁ ଯାଇଥିଲୁ । ତୁ ?

ଗୋଟାଏ କୋକାକୋଲା ଖାଇଛୁ । ସ୍କୁଲ ଟିକଏ କ୍ୟାଣ୍ଟିନ ଆଡେ ବୁଲିଆସିବା...

ଆପତ୍ତି କଲାନାହିଁ ଲଳିତା । ସେ ବୁଝିପାରିଥିଲା ଊର୍ମିଳାକୁ ଖୁବ୍ ଭୋକ କରୁଛି । ଆଜି ତ' ଖିଆପିଆ ହେଉ ହେଉ ଡେରି ହେବ ।

ଖେଳ ଆରମ୍ଭ ହେବା ପୂର୍ବରୁ ସେମାନେ ପହଞ୍ଚି ଯାଇଥିଲେ । ଲଳିତା ପାଇଁ ଅନୁମତି ସଂଗ୍ରହ କରିବାକୁ ଊର୍ମିଳାକୁ କଷ୍ଟ ପାଇବାକୁ ହେଲାନାହିଁ । କହିବା ସଙ୍ଗେ ସଙ୍ଗେ ଅନୁମତି ମିଳିଲା ।

ଧୀରେ ଧୀରେ ଦର୍ଶକମାନଙ୍କର ଆଗମନ ଓ ଖେଳ ଆରମ୍ଭ ହେବା ପୂର୍ବରୁ ସମସ୍ତ ସିଟ୍ ପ୍ରାୟ ପୂର୍ଣ୍ଣ ହୋଇ ଆସିଲା । ଏକ ସମୟରେ ରେଫରି ଫିଲଡ଼କୁ ଆସି ସଙ୍କେତ ଜଣାଇଲେ । ଖେଳାଳିମାନେ ଭିତରକୁ ଆସିବା ପୂର୍ବରୁ ଲାଇନକୁ ପ୍ରଣାମ କରି ଭିତରକୁ ଆସିଲେ । ଦୁଇଟି ଦଳର ବିଭିନ୍ନ ରଙ୍ଗର ପୋଷାକ ।

କେତେଜଣ ପ୍ଲେୟାରଙ୍କୁ ଚିହ୍ନାଇଦେଲା ଊର୍ମିଳା । ଘନ ଘନ କରତାଳି ପଡ଼ୁଥାଏ ଦର୍ଶକ ଗ୍ୟାଲେରୀରୁ । ଏଥର ଟିକିଏ ଜୋରରେ କରତାଳି ପଡ଼ିଲା । ୟାକୁବ୍ ଆସୁଛି, ସ୍ପୋଟିଂ କ୍ଲବର ମଉଡ଼ମଣି । ତାକୁ ମଧ୍ୟ ଚିହ୍ନାଇ ଦେଲା ଊର୍ମିଳା ।

ଦର୍ଶକ ଗ୍ୟାଲରୀରୁ ଫୋଟକା ଓ ଶଙ୍ଖ ଘଣ୍ଟା ଶୁଭିଲା ।। ଦର୍ଶକମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଦେଖାଗଲା । ଆଉ ଜଣେ କିଏ ଖେଳାଳି ଆସୁଛନ୍ତି ବୋଧହୁଏ । କିଏ ଆସୁଛି ଊର୍ମିଳା ଜାଣେ । ଶଙ୍କର ଦାସ ।

ଲଳିତାର କାନେ କାନେ ସେ କହିଲା—ସେମନ୍ ଏନ୍‌ଟ୍ରେନ୍‌ସ ଆଡ଼େ ଚାହିଁ, ଆସୁଛି । ପୋଷାକଟା ଦେଖୁଛୁ ତ ? କେଡ଼େ ଚମତ୍କାର ।

ଲଳିତା ଚାହିଁଲା । ଏଇ ଶଙ୍କର ଦାସ । ଊର୍ମିଳା ଯାହା କହୁଥିଲା ଠିକ୍ । ସୁନ୍ଦର ସ୍ୱାସ୍ଥ୍ୟର ଅଧିକାରୀ ଶଙ୍କର ଦାସ । ଶୁଭ୍ର, ମାର୍ବଲ ପଥରପରି ଦେହରେ ମାଛି ବସିଲେ ବୋଧହୁଏ ଝସିଯିବ । ପୋଷାକଟା ତାକୁ ବେଶ ମାନୁଛି ।

ହୁଇସିଲ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଖେଳାଳି ନିଜ ନିଜର ପୋଜିସନ ଠିକ କରିନେଇ ପ୍ରସ୍ତୁତ ହେଲେ । ସେଣ୍ଟର ଲାଇନର ମଝିରେ ବଲଟି ଥୁଆ ହୋଇଥାଏ । ରେଫରୀର ସଙ୍କେତକୁ ଅପେକ୍ଷା କରିଥାନ୍ତି ଖେଳାଳିମାନେ ।

ଊର୍ମିଳାର ଦୃଷ୍ଟି ଏରିୟାନ କ୍ଲବ୍ ଆଡ଼େ, ବିଶେଷତଃ ଦୃଷ୍ଟିଟା ଶଙ୍କର ଦାସ ଉପରେ । ଆଗେ ଏରିୟାନ ଦଳ ବଲ୍ ଟଚ୍ କରିବେ । ଶଙ୍କର ଦାସ ପ୍ରଥମେ ବଲ୍ ସ୍ପର୍ଶକରି ଅନ୍ୟ ପ୍ଲେୟରକୁ ପାସ କରିବ । ସେହି ପ୍ଲେୟରଟା ପୁଣି ଶଙ୍କର ଦାସକୁ ଯଦି ଦିଏ ତାହାହେଲେ ବିଦ୍ୟୁତ୍ ବେଗରେ ବଲ ନେଇ ନିଶ୍ଚୟ ଦଉଡ଼ିବ ଶଙ୍କର ଦାସ । ଲଳିତାର ଦୃଷ୍ଟି ମଧ୍ୟ ଶଙ୍କର ଦାସ ଉପରେ ।

ଖେଳ ନିର୍ଦ୍ଦେଶକ ସଙ୍କେତ ଦେଲେ । ଶଙ୍କର ଦାସ ପାସ୍ ଦେଲା ରାଇଟ୍ ଇନକୁ ଓ ରାଇଟ୍ ଇନ ସଙ୍ଗେ ସଙ୍ଗେ ରାଇଟ୍ ଆଉଟକୁ ବଢ଼ାଇ ଦେଲା । ରାଇଟ୍ ଆଉଟ୍ ସଟ୍ ମାରିଲା ସେଣ୍ଟରକୁ । ଘନ ଘନ କରତାଳି ଉତ୍ଥିତ ହେଉଥାଏ ଗ୍ୟାଲେରୀରୁ—ଶଙ୍କର ଦାସ ବଲ ପାଇ ଅଗେଇବାକୁ ଲାଗିଛି ।

ଲଳିତାର ଆନନ୍ଦ ଭିତରେ ଭିତରେ, କିନ୍ତୁ ଊର୍ମିଳା ପ୍ରକାଶ୍ୟରେ ଗୋଟିଏ ଦୁଇଟି ଉତ୍ତେଜକ ଶବ୍ଦ ପ୍ରୟୋଗ କଲା । ଅନେକ ଚାହିଁଲେ ତାକୁ, ନିଜେ ଲଜ୍ଜିତ ନହେଲେ ମଧ୍ୟ ଲଳିତାକୁ ଲଜ୍ଜା ଲାଗିଲା । ସେ ଟିକିଏ ଚିମୁଟି ଦେଲା ଊର୍ମିଳାର ଜାନୁକୁ ।

ଏ କଣ ହେଉଛ, ଊର୍ମି !—ଥୟଧରି ବସି ଦେଖ ।

ଖୁବ୍ ଆସ୍ତେ କହିଲା ଲଳିତା ।

ୟାକୁବ ବାଦ ସାଧିଲା । ସ୍ପୋର୍ଟିଂର ବ୍ୟାକ୍ ୟାକୁବ୍, ଶଙ୍କର ଦାସ ପାଣିଂ ବଲ୍‌ଟା ଧରିବା ପୂର୍ବରୁ ଛଞ୍ଚାଣପରି ଦଉଡ଼ି ଆସି ହେଡ଼କରି ବଲ୍‌ଟାକୁ ନିଜ ଦଳର ଖେଳାଳୀ ପାଖକୁ ପହଞ୍ଚାଇ ଦେଲା । ବଲ୍‌ଟାକୁ ଯେପରି ଅପେକ୍ଷା କରିଥିଲା ଖେଳାଳିଟି । ସେ ମଧ୍ୟ ପାଶ୍ କରିଦେଲା ଅନ୍ୟ ଖେଳାଳୀ ପାଖକୁ । କ୍ରମେ ପାଶ୍ ପାଶ୍‌ରେ ବଲ୍‌ଟି ଆସିଲା ଏସିୟାନର ପୋଷ୍ଟ ପାଖକୁ । ବ୍ୟାକ୍ ମଧ୍ୟ ମିସ୍ କଲା, କିନ୍ତୁ ଶଙ୍କର ଦାସ କେତେବେଳେ ଆସି ପହଞ୍ଚିଲା କେହି ଜାଣନ୍ତି ନାହିଁ । ବ୍ୟାକ୍ ମିସ୍ କରିବା ସଙ୍ଗେ ସଙ୍ଗେ ବଲ୍‌ଟାକୁ ଛଡ଼ାଇ ନେଇ ନିଶ୍ଚିତ ଗୋଲ୍‌ରୁ ଦଳକୁ ରକ୍ଷାକରି ଏକା ଏକା ନେଇ ଆସିଲା, ବାଧା ଏଡ଼ାଇ ୟାକୁବର ପାଖଯାଏ । ୟାକୁବକୁ ନେବାର ସୁଯୋଗ ନଦେଇ ଶର୍ବଶକ୍ତି ପ୍ରୟୋଗ କରି ଗୋଲ୍‌ପୋଷ୍ଟ ଲକ୍ଷ୍ୟ କରି ହିଟ୍ କଲା ।

ସେ ହିଟ୍ ଅଟକାଇ ପାରିଲା ନାହିଁ ଗୋଲ୍‌କିପର୍ ।

ବିପୁଳ ଜନତା ଚିତ୍କାର କରି ଉଠିଲେ ।

ଦେଖିଲୁ ?—ଊର୍ମିଳା ପଚାରିଲା ଲଳିତାକୁ ।

ଆଶ୍ଚର୍ଯ୍ୟ ଖେଳୁଛନ୍ତି ଶଙ୍କର ବାବୁ···କହିଲା ଲଳିତା ।

ଆହୁରି ଦେଖିବୁ···

ଲଳିତା ଦେଖିଲା ଊର୍ମିଳା ମୁହଁ ଚିପି ହସୁଛି । ଆଉ କିଛି କହିଲା ନାହିଁ, ନିରବରେ ଚାହିଁଥାଏ ଖେଳଆଡ଼େ ।

ଖେଳ ପୂର୍ବପରି ଚାଲିଥାଏ । ଏକ ସମୟରେ ବିଶ୍ରାମ ପାଇଁ ସମୟ ଦିଆଗଲା । ଖେଳାଳିମାନେ ନିଜ ଦଳରେ ଆସି ମିଳିଲେ ।

କିଛି ସମୟପରେ ପୁନର୍ବାର ଖେଳ ଆରମ୍ଭ ହେଲା ।

ପୂର୍ବାଂଶ ଅପେକ୍ଷା ଶେଷାଂଶ ଆହୁରି ଇଣ୍ଟରେଷ୍ଟିଂ । ଉଭୟ ପକ୍ଷ ପ୍ରବଳ ଉତ୍ସାହ ନେଇ ପରସ୍ପରଙ୍କୁ ଆକ୍ରମଣ କରିବାକୁ ଲାଗିଲେ । କି ଉତ୍ସୁକର ଖେଳ । ଜୀବନରେ ଏହି ସର୍ବପ୍ରଥମ ଫୁଟବଲ ମ୍ୟାଚ୍ ଦେଖିଲା ଲଳିତା । ରଜତର କଥା ତାର ମନେ ପଡ଼ିଲା । ରଜତ ନିଶ୍ଚୟ ଆସିଥିବ । ମାତ୍ର ତିନି କମ୍ବା ଚାରି କିଲୋମିଟର ଦୂରତ୍ୱ । ନିଶ୍ଚୟ ସେ ଆସିଛି । ସାଙ୍ଗମାନଙ୍କ ସାଙ୍ଗରେ କେଉଁଠି ଆସି ବସିଛି ।

କେବେ ସେ ଏହିପରି ଖେଳାଳୀ ହେବ ଖେଳ ଦେଖି ଏଇକଥା ଭାବୁଥିବ ନିଶ୍ଚୟ । ଗୋଡ଼ଟା ତାର ଭଲ ହେବା ପରେ ବର୍ଷେ ଯାଏ ସେ ପୂର୍ଣ୍ଣ ବିଶ୍ରାମ ନେଇଥିଲା, ତାପରେ କେତେଟା ବିଶେଷ ମ୍ୟାଚରେ ସେ ଖେଳିଛି । ଆଃ ଯଦି ରଜତ ସହିତ ଶଙ୍କର ଦାସର ପରିଚୟ ହୁଅନ୍ତା, ଦୁଇତିନିଟା ବର୍ଷ ମଧ୍ୟରେ ସେ ନିଶ୍ଚୟ କ୍ଲାସ ୱାନ ଖେଳାଳୀ ହୁଅନ୍ତା । ତା' ପାଇଁ ଚେଷ୍ଟା କଲେ କପରି ହୁଅନ୍ତା ?

କିନ୍ତୁ ···

ଶଙ୍କର ଦାସ ସହିତ ଆଳାପ କପରି ସମ୍ଭବ ? ବଡ଼ ବଡ଼ ଟିମ ସହିତ ସେ ସଂପୃକ୍ତ—ଆଜି ଏଠାରେ ତ' କାଲି କଲିକତା କମ୍ବା ବମ୍ବେରେ । ନା, ରଜତ ପାଇଁ ଊର୍ମିଳାକୁ ଟିକଏ ଡେଲେଇବାକୁ ହେବ ।

ଖ୍ୟିପଣଲବେ ପାଣ୍ଟିରୁଣ୍ଡ ଚାଲିଛି । ଏସିସ୍ଥାନର ସବୁ ପାସିଂ ବଲ ଆସି ଶଙ୍କର ଦାସ ପାଖରେ ପଡ଼ୁଛି । ଶଙ୍କର ଯାହାକୁ ପାଶ୍ ଦେଉଛି ସେ ପୁଣି ରିଟର୍ଣ୍ଣ ପାଶ୍ ଦେଉଛି ତା' ପାଖକୁ । ପାଶ୍ ପାଶ୍‌ରେ ବଲଟା ଅନେକଦୂର ଆଗେଇ ଆସିଲା । କିନ୍ତୁ ଶେଷ ପର୍ଯ୍ୟନ୍ତ ସ୍କାବୁବ୍ ସାକ୍ଷାତ ଯମପରି ଠିଆ ହୋଇଛି ବ୍ୟାକରେ । ଏଇଠି ଶଙ୍କର ଦାସର ସମସ୍ତ ଜାରିଜୁରି ପରାଜିତ ।

କିନ୍ତୁ ସ୍କାବୁବ୍‌ର ଭାଗ୍ୟ ସେଦିନ ମନ୍ଦ । ଖେଳ ଶେଷ ହେବାକୁ ଆଉ ମାତ୍ର ତିନିମିନିଟ୍ ସମୟ ଅଛି । ରାଇଟ୍ ଇନ୍‌ର ପାଶ୍ ପାଇ ଶଙ୍କର ଦାସ ଏପରି ଗୋଟାଏ ହେଡ଼ କଲା ଯେ, ଅତି ଆଶ୍ଚର୍ଯ୍ୟ ଭାବେ ବଲଟା ଗୋଟ ଭିତରେ ପଶିଗଲା ।

ଅନେକଙ୍କର ଧାରଣା ନଥିଲା, ଅନେକ ଦେଖି ମଧ୍ୟ, ନଦେଖିଲା ପରି । କାରଣ ଏତେ ଦୂରରେ ପୋଷ୍ଟ ଭିତରେ ବଲ ଇନ୍ କରିବା କଥା ନୁହେଁ; କିନ୍ତୁ ହେଲା ତ । ଷ୍ଟ୍ରାଇକିଂ ଯେତେବେଳେ ହେଣ୍ଡର କରିବାକୁ ଆସିଲେ, ଜୟୋଲ୍ଲାସରେ ଦର୍ଶକଗଣ ସେତେବେଳେ ନୃତ୍ୟ କରିବାକୁ ଲାଗିଛନ୍ତି ।

ହେଣ୍ଡର ପାଶ୍ ଦେବାପରେ ଖେଳ ପରିଚାଳକ ଖେଳ ଶେଷର ସଙ୍କେତ ଦେଲେ ।

ଷ୍ଟେଡିୟମ୍‌ରୁ ବାହାରି ଆସୁଥିଲେ ଊର୍ମିଳା ଓ ଲଳିତା । କିଏ ଜଣେ ପଛରୁ କହିଲା—ନମସ୍କାର, ଊର୍ମିଳା ଦେବୀ !

ଚମକି ପଡ଼ି ପଛକୁ ଚାହିଁଲା ଊର୍ମିଳା । ସୁବ୍ରତ ରାଉତ ଏସିସ୍ଟାନ୍ଟ ଇଂଜିନିୟର ଇଞ୍ଚେଶ୍ଵର !

ନମସ୍କାର ? ହାତ ଯୋଡ଼ି ନମସ୍କାର କଲା ଊର୍ମିଳା ଏବଂ ଊର୍ମିଳାର ଦେଖା ଦେଖି ଲଳିତା ମଧ୍ୟ ନମସ୍କାର କଲା ।

ଚାଲି ଯାଉଛନ୍ତି ଯେ ? ଭାଇଙ୍କ ସାଙ୍ଗରେ ଦେଖା କରିବେ ନାହିଁ ?

ଊର୍ମିଳା ଲଳିତାକୁ ଠିଆ ହେବାକୁ କହି ସୁବ୍ରତ ପାଖକୁ ଆସି ଦୁଇମିନଟ୍ ପର୍ଯ୍ୟନ୍ତ କଣ କଥାବାର୍ତ୍ତା ହେଲା । ଲଳିତା କିଛି ଶୁଣି ପାରିଲା ନାହିଁ । ଊର୍ମିଳା ଫେରି ଆସି କହିଲା—ଚାଲ, ଭିଡ଼ ପତଳା ହୋଇଛି, ବାହାରି ଯିବା ।

ଆସ୍ତୁ ଆସ୍ତୁ ଲଳିତା ପଚାରିଲା—ସେ କିଏ ?

ଲୋକଟା ମୋର ପ୍ରେମରେ ପଡ଼ିଛି···ହସି ହସି କହିଲା ଊର୍ମିଳା ।

ଲଳିତା ମଧ୍ୟ ସେଇପରି ହସି ହସି କହିଲା—ତୋର ରୂପ ଓ ସ୍ୱାସ୍ଥ୍ୟ ଦେଖି ଯେକୌଣସି ଲୋକ ତ' ପ୍ରେମରେ ପଡ଼ିବେ । ତାଙ୍କର ଆଉ ଦୋଷ କଣ ?

ଏଗୁଡ଼ାକୁ ତୁ ବିଶ୍ୱାସ କରୁ ? ଦେଖିଲୁ ପରା ମୋ ସାଙ୍ଗରେ କଥାବାର୍ତ୍ତା ହେଉ ହେଉ ତୋ ଆଡ଼େ କଣେଇ କଣେଇ ଚାହୁଁ ଥିଲା···

ତୋ ସାଙ୍ଗରେ ଯେତେବେଳେ ଅଛୁ, ମୋ' ଆଡ଼େ ଚାହିଁବାଟା କ'ଣ ଅନ୍ୟାୟ ?

ନ୍ୟାୟ ଅନ୍ୟାୟ ବୁଝିବାର ତୋର ବୟସ ହୋଇ ନାହିଁ ଦେଖୁଛୁ । ସୁଲତ'…ସ୍ୱପ୍ନା ମଝିରେ ଯୁକ୍ତିତର୍କ ଆରମ୍ଭ କରି ଦେଲୁଣି…

ତୋର ଭାଇ କ'ଣ ଖେଳ ଦେଖିବାକୁ ଆସିଛନ୍ତି ?…

ଚାଲ, ଯାହା ପଚାରିବାର ତୁମରେ ପଚାରିବୁ ।

ଲଳିତା ଆଶ୍ଚର୍ଯ୍ୟ ହେଲା ।

ଖେଳ ଦେଖି ଆସିବା ବେଳଠୁ ଉର୍ମିଳା କିପରି ଗମ୍ଭୀର ହୋଇ ରହିଛି । ଲଳିତା କିଛି ପଚାରିଲେ ବି ଉତ୍ତର ଦେଉନାହିଁ । କଣ ହେଲା ଉର୍ମିଳାର ! ଖେଳ ନାଁ ଶୁଣି ଯିଏ ଉନ୍ମାଦିନୀ ହୁଏ, ସିଏ କଣ ଖେଳ ଦେଖିବା ପରେ ଏପରି ନିସ୍ତେଜ ହୋଇପଡ଼େ ? କାହିଁ ସିଏତ ହେଉନାହିଁ । ବେଶ୍ ଭଲ ଲାଗୁଛି ତାକୁ । ମନେ ହେଉଛି ଖେଳଟା ୪୫ ମିନିଟରୁ ଯଦି ଆଉ ଟିକିଏ ଅଧିକ ସମୟ ହୁଅନ୍ତା ତେବେ ବି ଅଦୌ ବୋରିଂ ଲାଗନ୍ତା ନାହିଁ ।

ଉର୍ମିଳା ଠିକ୍ କହୁଥିଲା, ଶଙ୍କର ଦାସ ପରି ଖେଳାଳି ଖୁବ୍ କମ । ଆଜିର ଖେଳ ଦେଖି ତାର ଧାରଣା ଠିକ୍ ଜନ୍ମିଛି । ପୁଣି କେବେ ଏସିୟାନ୍ ଟିମ ଖେଳିବ ଜାଣିଲେ ରଜତକୁ ସେ ଏଠାକୁ ଡକାଇ ପଠାଇବ—ଏଇଠୁ ସମସ୍ତେ ଯାଙ୍ଗ ହୋଇ ଯିବେ । ରଜତ ଯେମିତି ଖେଳାଳି ସେ ଠିକ୍ ଶଙ୍କର ଦାସକୁ ହାରେଇ ପାରିବ ?

ଆଚ୍ଛା ଶଙ୍କର ଦାସ କରେ କଣ ? କେବଳ ଖେଳେ ନା, କେଉଁଠି ଚାକିରି କରେ ? ସେମାନଙ୍କର ତ' କୋଇଲା ଖଣି ଧନ ଧନଟା, ତାଛଡ଼ା କେତେଗୁଡ଼ିଏ ବ୍ୟାଙ୍କରେ ସେୟାର ଅଛି, ଅନ୍ୟ ସବୁ କେତେପ୍ରକାର ବ୍ୟବସାୟ ଅଛି—ଯଦି ବାପାଙ୍କୁ କହି ଶଙ୍କର ଦାସ ପାଇଁ ଗୋଟିଏ ଚାକିରି ସେ କରି ଦେଇ ପାରେ, ବାପାଙ୍କ କମ୍ପାନୀ କୋଇଲା ଖଣିରେ ତାହାହେଲେ ରଜତର ବଡ଼ ଉପକାର ହୁଅନ୍ତା ।

ରାତିରେ ପଢାପଢ଼ି କିଛି ହେଲ ନାହିଁ ।

ଉର୍ମିଳା ଶୋଇଛି ତ ଶୋଇଛି…ଯେତେ ଯେମିତି ସେ ନିଜେ ଖେଳି କ୍ଳାନ୍ତ ହୋଇ ପଡ଼ିଛି । ଦୁଇ ତିନଥର ଡାକି କୌଣସି ଉତ୍ତର ନପାଇ ଲଳିତା ମଧ୍ୟ ଆଲୁଅ ଲିଭାଇ ଶୋଇଲା । ନଅଟାରେ ଯେତେବେଳେ ଖିଆ-ପିଆର ଘଣ୍ଟା ବାଜିଲା ସେଇ ଶବ୍ଦରେ ନିଦ ଭାଙ୍ଗିଗଲା ଲଳିତାର । ଉର୍ମିଳାକୁ ଡାକି ନେଇ ସେ ଖାଇବାକୁ ଗଲା ।

ଖିଆପିଆରେ ଉର୍ମିଳାର ଅବସ୍ଥା 'ଯଥା ପୂର୍ବଂ ତଥା ପରଂ' । ଜଲେ ଗୁଡ଼ିଲ ପୃଷ୍ଟିଲ ଭଳି ହାଣ୍ଡି ପରି ତାର ମୁହଁଟା ହୋଇଛି । ତା ସହିତ କଥା କହିବାକୁ ପୁଣି ଭୟ ହୁଏ । ତଥାପି ଲଳିତା ଆଲୁଅ ଲିଭାଇ ଦେଇ ଡାକିଲା—ଉର୍ମି ଶୋଇ ପଡ଼ିଲୁ ?

ରାତି ହେଇଛି, ବକର ବକର ହ'ନା—ଯାହା ପଚାରିବାର କାଲି ସକାଲେ ପଚାରିବୁ…

ଆଉ କିଛି କହିଲା ନାହିଁ ଲଳିତା, ସେ ମଧ୍ୟ ଶୋଇବାକୁ ଚେଷ୍ଟାକଲା ।

ସକାଳେ ଲଳିତା ଉଠିଲା ବେଳକୁ ଉର୍ମିଳାର ଗାଧୁଆ ପାଧୁଆ ଶେଷ ହୋଇଛି, ଖାତା ବାହାର କରି କଣ ଲେଖୁଛି । କିଛି ନପଚାରି ଲଳିତା ତାର ନିତ୍ୟକର୍ମ ଶେଷ କରିବାକୁ ଗଲା । ଗାଧୋଇ ଆସି ଦେଖିଲା ଉର୍ମିଳା ନାହିଁ, ଖାତାଟା ଖୋଲା ପଡ଼ିଛି ।

ଭାବିଲା ଉର୍ମିଳା ବୋଧହୁଏ କ୍ୟାଣ୍ଟିନ୍‌ଆଡ଼େ ଯାଇଛି । କାଲି ତାକୁ ନ ଡାକି ଏକା ସେ ଯିବାରତ କଥା ନୁହେଁ । ଆଜି ପୁଣି ଲଳିତାର ପାଳି, କ୍ୟାଣ୍ଟିନ୍‌ରେ ଯାହା ଖର୍ଚ୍ଚ ହେବ ଆଜି ସବୁତକ ତାକୁ ଦେବାକୁ ହେବ ।

ତେବେ ସେ ଗଲେ କେଉଁଆଡ଼େ ? ଆଉ କି. ହଷ୍ଟେଲ ସୁପରିନ୍‌-ଟେଣ୍ଡେଣ୍ଟ ତା'ପ୍ରତି ଅସନ୍ତୁଷ୍ଟ ହୋଇ ଡକାଇ ପଠାଇଛନ୍ତି । କାଲି ସେମାନେ ବାହାରକୁ ଯାଇଥିଲେ, ଗ୍ରୁଡ଼ିବାର କଣ ଇଚ୍ଛା ନଥିଲା ତାଙ୍କର ?

ହେଲେ କଣ ହେଲା ? ଉର୍ମିଳା ଡି. ପି. ଆଇଙ୍କ ନାତୁଣୀ, ସୁପରିନ୍‌-ଟେନ୍‌ଡେଣ୍ଟ ଏକା କାହିଁକି, କଲେଜର ସମସ୍ତ ଅଧ୍ୟାପିକା ତାକୁ ଖାତିର କରିବା କଥା । ଅଳ୍ପଦିନ ହେଲା ଏଠାରେ ଆସି ମଧ୍ୟ ଉର୍ମିଳାର କୀର୍ତ୍ତି ସେ

ଦେଖି ପାରୁଛୁ । ଯାଉ, ଯୁଆଡ଼େ ଯାଇଥାଉ, ଆସିବତ’ କଲେଜ ଟାଇମ୍ ଭିତରେ ।

ଲୁଗାପଟା ଛାଡ଼ି ପଢ଼ା ଟେବୁଲ ପାଖରେ ବସିଛି ଦଉଡ଼ି ଦଉଡ଼ି ଘର ଭିତରକୁ ଆସିଲା ଉର୍ମିଳା । ଲଳିତା ଦେଖିଲା, ଏ ଉର୍ମିଳା ଗତରାତିର ଉର୍ମିଳା ନୁହଁ । ଗମ୍ଭୀର ଦେଖାଯିବା ପରିବର୍ତ୍ତେ ମୁହଁରେ ହସର ରେଖା, ସ୍ୱରରେ ଚପଳତା । ପାଖକୁ ଆସି ଲଳିତାର ହାତଟାକୁ ଟାଣି ଟାଣି କହିଲା —ଆସିଲୁ, ଦେଖିବୁ…

କଣ ଦେଖିବି ?—ଲଳିତାର ବିସ୍ମିତ କଣ୍ଠସ୍ୱର ?

ଆ’ତ’ ମୋ ସାଙ୍ଗରେ…ଟାଣିଲା ଲଳିତାକୁ ।

କେଉଁଠି କି ? କ୍ୟାଣ୍ଟିନକୁ ?

କ୍ୟାଣ୍ଟିନକୁ ତ ଯିବ । ଆଗେ ଭିଜିଟରସ୍ ରୁମକୁ ଆ ।

କିଏ ଆସିଛି ? ଆମଘରୁ କିଏ ଆସିଛି । ବାପା ଲୋକ ପଠାଇଛନ୍ତି ବୋଧହୁଏ ?

ଦୁର୍ ବୋକୀ । ତମ ଘରୁ ନୁହେଁ, ଜଣେ ନୂଆ ଅତିଥି ଆସିଛି । ନୂଆ ଅବଶ୍ୟ ତୋ ପାଖରେ । ପରିଚୟ କରାଇ ଦେବି, ଆ !

ଜୋର୍ କରି ଲଳିତାକୁ ଚେୟାରରୁ ଉଠାଇ ଦେଲା ଉର୍ମିଳା ।

ମୋର ଖୁସିକୁ ଦେଖିବୁ ନାହିଁ ? ଅନେକ କଥା ତୋ ଆଗରେ ଲୁଚାଇଥିଲି । ଆଜିତ ଆଉ ଲୁଚାଇ ପାରିବି ନାହିଁ । ମୋତେ ତୁ କ୍ଷମା କରିବୁ, ଲଳିତା !

ଶେଷବେଳକୁ ଉର୍ମିଳାର କଣ୍ଠସ୍ୱର କମ୍ପିତ ସ୍ୱରହୋଇ ଆସିଲା । ଲଳିତାର ମନେହେଲା ଉର୍ମିଳା ଯେପରି କୌଣସି ଏକ ଅନୁତାପରେ ଦଗ୍ଧ ହେଉଛି । କଣ ଏପରି କଥା ଯାହା ସେ ଆଜିଯାଏ ଲୁଚାଇ ରଖିଥିଲା ? ଖୁସି କଥାରେ ଏତେ କଥା ତାର ମନରେ ଉଦୟ ହେଉଛି କାହିଁକି ?

କିଛି କହିଲା ନାହିଁ ଲଳିତା । କିଛିକ୍ଷଣରେ ସେ ଉର୍ମିଳାକୁ ଅନୁସରଣ କଲା ।

ଭିକ୍ଟର୍ସ ରୁମରେ ଆସି ପହଞ୍ଚିଲେ ଦୁହେଁ । ଆଗରେ ଉର୍ମିଳା, ପଛରେ ଲଳିତା ।

ଖଣ୍ଡିଏ ଚେୟାରରେ କିଏ ଜଣେ ଦୁଆରଆଡ଼େ ପିଠିକରି ବସି ସେଦିନର ଖବରକାଗଜ ଖଣ୍ଡିକ ଅତି ମନୋଯୋଗ ସହିତ ପଢ଼ୁଥିଲା । ସେମାନଙ୍କର ପଦଶବ୍ଦ ଶୁଣି ମୁହଁ ବୁଲାଇ ଚାହିଁଲା ।

ଚମକି ପଡ଼ିଲା ଲଳିତା । ଏ ଯେ ଶଙ୍କର ଦାସ ! ଏହି ଲୋକଟି ଉର୍ମିଳାର ଭାଇ ?

ନମସ୍କାର ପର୍ଯ୍ୟନ୍ତ କରିବାକୁ ଭୁଲିଗଲା ସେ । ଶଙ୍କର ଦାସ ଆଗହୋଇ ନମସ୍କାର ଜଣାଇଲା । କମ୍ପିତ ହାତଟିକୁ ଏକଜିତ କରି କୌଣସି ପ୍ରକାରେ ପ୍ରତିନମସ୍କାର କଲା ଲଳିତା ।

ଲଳିତାର ହାତଧରି ଚେୟାର ପାଖକୁ ଆଣି ଦୁଇଟି ଅଲଗା ଚେୟାରରେ ବସିଲେ ଉର୍ମିଳା ଓ ଲଳିତା ।

ଭାଇ !···ଉର୍ମିଳା କହିଲା···ଏ ହେଉଛି ଲଳିତା ସାମନ୍ତରା, ମୋର କ୍ଲାସ ଓ ରୁମ୍ ମେଟ୍—ଆଉ ଲଳିତା, ଏ ହେଉଛନ୍ତି ଏସିୟାନ କ୍ଲବର ବିଖ୍ୟାତ ଖେଳାଳୀ ମୋର ଭାଇ ଶଙ୍କର ଦାସ ।

ଭେରି ଗ୍ଲାଡ୍ ଟୁ ମିଟ୍ ଇଉ ମିସ ଲଳିତା ଦେବୀ !

ଶଙ୍କର ଆଉ କିଛି ନକହି ଖବର କାଗଜ ଉପରେ ଦୃଷ୍ଟି ରଖିଲେ । ଉର୍ମିଳା କହିଲା—ଭାଇ, କ୍ୟାଣ୍ଟିନକୁ ଚାଲ କିଛି ଖାଇବ ? ସକାଳଠାରୁ ଆସିଛ······

ତୁ କଣ ଭାବୁଛୁ ମୁଁ ନଖାଇ ଆସିଛି ?

ତୁମେ ସବୁବେଳେ ଏଇକଥା କହୁଛ । କେତେଥର ତୁମକୁ କହୁଛି ନା, ଥରେ ଆମ କ୍ୟାଣ୍ଟିନରେ ଖାଇବ ବୋଲି । ମୋତେ ତ' ବାରମ୍ବାର ଆଳ ଦେଖାଇ କହୁଛ, ଏପରି କ୍ୟାଣ୍ଟିନମାନଙ୍କରେ ଖାଇଲେ ସ୍ୱାସ୍ଥ୍ୟ ନଷ୍ଟହୁଏ । ମୁଁ କହୁଛି ସେ ଭୟ ତୁମର ନାହିଁ । ଆଜି ଆଉ ତୁମକୁ ଛାଡ଼ୁନାହିଁ ।

ପାଗଳୀ !···ସସ୍ନେହରେ ଉର୍ମିଳାର ମୁଣ୍ଡରେ ହାତ ବୁଲାଇ ବୁଲାଇ କହିଲେ ଶଙ୍କର ଦାସ—ଆଉ ଥରେ ଆସିବି । ବମ୍ବେ ଯାଇଥିଲି ଶୁଣିଥିବୁ ।

ଆଜିକି ପ୍ରାୟ ଏକଯୁଗାବ୍ଦ ହେଲା ଅଫିସ ଯାଇନାହିଁ, ଅବଶ୍ୟ ଫୁଟବଲ ସିଜନ ପାଇଁ ଛୁଟି ନେବାର ଅନୁମତି ମୋର ଅଛି । କିନ୍ତୁ ବାକି କାମଗୁଡ଼ାକ ତ' ମୋତେ କରିବାକୁ ହେବ···ଆଜ୍ଞା ଯାଉଛି, ଆଉ ଦିନେ ଆସିବି, ଅବଶ୍ୟ ଆସିବା ପୂର୍ବରୁ ଖବର ଦେବି, ଦେଖିବି ତମେମାନେ କେତେ ଖୁଆଇ ପାରିବ ।

ଶଙ୍କର ଚାହିଁଲା ଲଳିତା ଆଡ଼େ, ଲଳିତା ଲଜ୍ଜାରୁଣ ମୁହଁଟାକୁ ଚଟ୍‌କରି ଉର୍ମିଳା ଆଡ଼େ ବୁଲାଇ ନେଇ କହିଲା—ତୁ ବସି କଥାବାର୍ତ୍ତା ହେଉଥା, ଉର୍ମି !—ଏଇ ସାଙ୍ଗେ ସାଙ୍ଗେ ମୁଁ ଆସୁଛି···

ଉତ୍ତରର ଅପେକ୍ଷା ନକରି ଘରୁ ବାହାରିଗଲା ଲଳିତା । ଡେରି ସେ କରିନାହିଁ, ଆସିଲା—ତାର ପଛେ ପଛେ ଟ୍ରେ-ରେ କଫି ଗ୍ଲାସ ଓ ସାମାନ୍ୟ ରକମର ହାଲୁକା ଜଳଖିଆ ନେଇ କ୍ୟାଣ୍ଟିନର ବୟ ଆସି ଟେବୁଲ ଉପରେ ଟ୍ରେ ରଖି ପରିବେଷଣ କଲା ।

ଆପଣ ପୁଣି ଅତିଥି ଚର୍ଚ୍ଚା ପାଇଁ ବ୍ୟସ୍ତ ହୋଇ ପଡ଼ିଲେ ? ଉର୍ମି, ତୋର ବନ୍ଧୁଙ୍କ ପାଖରେ ଋଣୀ ରହିଲି ।

ଲଳିତା ମୁହଁ ତଳକୁ କଲା ।

ଆ'—ଡେରି କରୁଛୁ କାହିଁକି ? ଭାଇଙ୍କ ପାଖରେ ପୁଣି ଲାଜ ?

କହି ଉର୍ମିଳା ପାଖରେ ବସାଇଲା । ଖାଉ ଖାଉ ଶଙ୍କର ଦାସ ପଚାରିଲା—ଖେଳ କେମିତି ଲାଗିଲା, ଲଳିତା ଦେବୀ !

ଖାଦ୍ ଇଣ୍ଟରେଷ୍ଟିଂ ! ଆପଣ ତ' ଏକା ଏଗାରଜଣ···ମୃଦୁ କଣ୍ଠରେ କହିଲା ଲଳିତା ।

ଛି, ଏତେଗୁଡ଼ାଏ ପ୍ରଶଂସା କରିବେ ନାହିଁ ।

ହସ ପରିହାସ ଭିତରେ ଅହାରପର୍ବ ଶେଷ ହେଲା । ଲଳିତା ଅନେକ ପରିମାଣରେ ସହଜ ହୋଇ ଆସିଥାଏ । ଚେୟାରରୁ ଉଠି ଶଙ୍କର ଦାସ କହିଲା—ଆଜି ବେଶି କିଛି କଥାବାର୍ତ୍ତା କରି ପାରିଲି ନାହିଁ ବୋଲି କ୍ଷମା କରିବେ ଲଳିତା ଦେବୀ ! ୱିଇ ଉଇଲ୍ ମିଟ୍ ଏଗେନ ! ଆଜ୍ଞା ଆସୁଛି—ଗୁଡ଼୍ ବାଇ···ଉର୍ମି, ଚିଠି ଦେବୁ···

ଶଙ୍କର ଦାସ ଅଦୃଶ୍ୟ ହୋଇଗଲା !

ବନ୍ଧୁ ଦ୍ୱୟ ବାହାରର ଗେଟ୍ ପର୍ଯ୍ୟନ୍ତ ଆସିଲେ ଶଙ୍କର ପଛେ ପଛେ । ଶଙ୍କର ରିକ୍ସାରେ ବସିଯିବା ପରେ ଫେରିଲେ ଦୁହେଁ ।

ଆସୁ ଆସୁ ଲଲିତା କହିଲା—ଏମିତି ସୁପା ଲୋକ ପୁଣି ଥାଆନ୍ତି ?

କାହା କଥା କହୁଛୁ ? ପଚାରିଲା ଉର୍ମିଳା ।

ଇଏ ଆଉ ? ଇ-ଇ ! କେଡ଼େ ସୁନ୍ଦର ?

କଣ କଲେ କି ?

ତୋଷଣ କ ସିଲ । କଣ କରନ୍ତୁ ତୁ ଯେମିତି ଭଲ କରି ଜାଣୁ, ମୁଁ ବି' ସେମିତି ଜାଣେ । ଶଙ୍କରବାବୁ ତୋର ଭାଇ ବୋଲି କାହିଁକି ଆଜିଯାଏ ଲୁଚାଇଥିଲୁ ?

ଲଳିତାର ଅଭିମାନ ଭରା ମୁହଁଟି କାହିଁକି ଖୁବ ସୁନ୍ଦର ଦେଖାଗଲା ଉର୍ମିଳାକୁ । ଲୋଭ ସମ୍ଭାଳି ପାରିଲା ନାହିଁ । ଗାଲ ଦୁଇଟା ଟିପି ଦେଇ କହିଲା—ଅଭିମାନିନୀରେ ରୁମ୍‌କୁ ଚାଲ; ସବୁ କହୁଛି···

ଦୁହେଁ ରୁମ୍‌କୁ ଆସିଲେ । ଉର୍ମିଳା ଲଳିତାର ହାତଧରି ନିଜର ଶଯ୍ୟାରେ ବସାଇ କହିଲା—ଆଜି ଆଉ କ୍ଲାସକୁ ଯିବାକୁ ଇଚ୍ଛା ହେଉନାହିଁ···

ମୋର ବି-ଇଚ୍ଛା ନାହିଁ । ତୁ ଆଗେ କହୁତ' କଥା କାହିଁକି ଲୁଚାଇଥିଲୁ ?

ଶୁଣ ଉର୍ମି ! ଆମେ ପରିଚୟ ଦେବାକୁ ଲଜ୍ଜାବୋଧ କରୁ । ସେ ଲଜ୍ଜାକର କଥା ଦୁନିଆର କାହାରି ପାଖରେ ପ୍ରକାଶ କରି ହୁଏନା । ଜଣେ ବିଖ୍ୟାତ ଶିଳ୍ପପତିଙ୍କର କାମ ଲାଲସା ତୃପ୍ତି କରିବା ପାଇଁ ଜଣେ ମହୀୟସୀ ନାରୀ ଯେପରି ଆତ୍ମୋତ୍ସର୍ଗ କରିଛି, ପୃଥିବୀରେ ଏପରି ନାରୀ କେତେଜଣ ଅଛନ୍ତି ଜାଣେନା ।

ସ୍ତବ୍ଧ ହୋଇ ଶୁଣୁଥାଏ ଲଳିତା ।

ଉର୍ମିଳା କହୁଥାଏ—ଶିଳ୍ପପତି ପ୍ରବୋଧ ଦାସ ରୂପନଗରକୁ ଆସିଥିଲେ ଗୋଟିଏ ଶିଳ୍ପ ପ୍ରତିଷ୍ଠାନ ସେଠାରେ ସ୍ଥାପନ କରିବେ ବୋଲି ନିର୍ଣ୍ଣୟ କରିବାକୁ । ସେଠାରେ ଖଣ୍ଡିଏ ଜମି ପାଇଲେ ଏବଂ ଜମି ଖଣ୍ଡିକ ପ୍ରତିଷ୍ଠାନ କରିବା ପକ୍ଷରେ ଅନୁକୂଳ ହବ କୋଠା ବାଡ଼ି ତିଆରି କଲେ । ଦୁଇମାସ

ମଧ୍ୟରେ ବିରାଟ ଗୋଟାଏ କାରଖାନାର ଭିତ୍ତି ସ୍ଥାପନ ହେଲା ସେଠାରେ । ସ୍ଥାନୀୟ ଜଣେ ଅଧିବାସୀ ଅଜୟ ସାମନ୍ତ ଉକ୍ତ ପ୍ରତିଷ୍ଠାନର ଜଣେ କର୍ମଚାରୀ ହିସାବରେ ନିଯୁକ୍ତି ପାଇଲେ । ତାଙ୍କର ଡେଜିଗନେସନ ହେଲା ଷ୍ଟୋର ବାବୁ ।

ଟିକଏ ରହିଲା ଉର୍ମିଳା । ଲଳିତା କିଛି କହିଲା ନାହିଁ । ନୀରବରେ ବସି ପରବର୍ତ୍ତୀ କଥା ଶୁଣିବା ଲାଗି ଅପେକ୍ଷା କଲା । କେତୋଟି ନୀରବ ମୁହୂର୍ତ୍ତ ଅତିବାହିତ ହେବା ପରେ ଉର୍ମିଳା କହିଲା—ଖୁବ୍ ଭଲଲୋକ ଥିଲେ ଅଜୟ ସାମନ୍ତ । ସମସ୍ତ କର୍ମଚାରୀ ତାଙ୍କୁ ଖୁବ୍ ଭଲ ପାଉଥିଲେ । ପ୍ରବୋଧ ଦାସ ଏଠାରେ ନଥାନ୍ତି । ମାସ ଶେଷରେ ଥରେ ଆସନ୍ତି, ବିଲ୍‌ରେ ଦସ୍ତଖତ କରି ବେତନର ବ୍ୟବସ୍ଥା କରି ଫେରି ଯାଆନ୍ତି"।

ପୁଣି ଟିକଏ ରହିଲା ଉର୍ମିଳା ।

ଖିଆପିଆର ଘଣ୍ଟା ବାଜିଲା—ଲଳିତା କହିଲା—ଆମର ଜାଗା କରିବାକୁ ମନା କରିଆସେ । ଡେରିକରି ତ' ଖାଇବା···

ଉର୍ମିଳାର ସମ୍ମତି ନେଇ ଲଳିତା ଉଠି ଚାଲିଗଲା ଓ କିଛି ସମୟ ପରେ ଫେରି ଆସି କହିଲା—ତାପରେ କଣ ହେଲା ?—

ବର୍ଷେ ଗୋଟାଏ ଗଡ଼ିଗଲା । ଦିନେ ଅଦିନରେ ପ୍ରବୋଧ ଦାସ ଆସିଲେ ରୂପନଗରକୁ । କାରରେ ଆସୁଥିଲେ, ହଠାତ୍ 'ରାସ୍ତାରେ ଦେଖା ହୋଇଗଲା ଅଜୟ ସାମନ୍ତ ଓ ତାଙ୍କ ସ୍ତ୍ରୀ ସବିତା ସାମନ୍ତ ସହିତ । ସେମାନେ ସାନ୍ଧ୍ୟ-ଭ୍ରମଣ କରି ଫେରୁଥିଲେ ତାଙ୍କୁ ଦେଖି ପ୍ରବୋଧ ବାବୁ ଡ୍ରାଇଭରକୁ ଗାଡ଼ି ରୋକିବାକୁ କହି ଗାଡ଼ିର ଉଇନଡୋ ବାଟେ ବାହାରକୁ ମୁହଁ ବାହାର କରି କହିଲେ—ବୋଧହୁଏ ବୁଲିବାକୁ ଯାଇଥିଲେ, ସାମନ୍ତବାବୁ । ଆଚ୍ଛା ଯାଆନ୍ତୁ, କାଲି ସକାଳେ ନଅଟା ବେଳେ ଟିକିଏ ମୋ ସାଙ୍ଗରେ ଦେଖା କରିବେ । ଭଦ୍ର ମହିଳାଙ୍କୁ ରାସ୍ତାରେ ଠିଆ କରାଇ ଆଉ ତ' କଥାବାର୍ତ୍ତା ହୋଇ ପାରେନା । ତେବେ ଆସନ୍ତୁ, ସକାଳେ ଦେଖା କରିବେ···

ପ୍ରବୋଧ ଦାସ ଡ୍ରାଇଭରକୁ ଆଦେଶ ଦେଲେ ଗାଡ଼ି ଚଳାଇବା ପାଇଁ । ଅଜୟ ସାମନ୍ତ ନମସ୍କାର କରି ସ୍ତ୍ରୀ ସହିତ ଫେରିଲେ । ବାଟରେ

ଆସ୍ତେ ଆସ୍ତେ ସବିତା ପଚାରିଲା—ଭଦ୍ର ଲୋକଟି କିଏ ? ବେଶ୍ ଖାନଦାନ ମନେହୁଏ । ରାଜପୁତ୍ର ପରି ଚେହେରା, ତାଙ୍କ ପାଖରେ ସେ ସ୍ତ୍ରୀ ଲୋକଟି କିଏ ବସିଥିଲା ?

ରାଜମହିଷୀ ।—ହସି ହସି କହିଲେ ଅଜୟ ସାମନ୍ତ ।

ବୁଝିନା···

ସେ ପରା ଆମର ଅନ୍ନଦାତା । ଭଦ୍ରମହିଳା ସମ୍ଭବତଃ ତାଙ୍କର ସହଧର୍ମିଣୀ ହୁହେଁ ଠିକ୍ ତାହାର ରସ୍ୱେଲ ପେସ୍ୱାର ପରି, ନୁହେଁ !—କହି ହସି ଆଡ଼େ ଚାହିଁଲେ ଅଜୟବାବୁ ।

ମୁଁ କଣ ସୁନ୍ଦରୀ ନୁହେଁ ! ତୁମେ କଣ ସୁନ୍ଦର ନୁହଁ ?—କହିଲା ସବିତା ।

ସେତେ ଆମେ ସୁନ୍ଦର ହେଉନା କାହିଁକି, ଆମେ ତ' ଗୋଲାମ···

ଛାଡ଼, ତୁମକୁ କଣ ପାଇଁ ଡାକଲେ ।

ଅନ୍ତର୍ଯ୍ୟାମୀ ଜାଣନ୍ତି । ତେବେ ମନେହୁଏ ବିରୋଧଭାବ କିଛି ନୁହେଁ ।

ତାପରେ ଲଳିତା—ଅଜୟ ସାମନ୍ତଙ୍କ ମୁଣ୍ଡରେ ଶାଗୁଣା ବସିଲା । ମହାକାଳ ହସିଥିଲା ଅଲକ୍ଷିତରେ । ଖୁସିର ଅନ୍ତରାଳରେ ଗୋଟାଏ ବିଷଧର ସର୍ପ ଆଘାତ କରୁଥିଲା ବାରମ୍ବାର ଅଜୟ ସାମନ୍ତଙ୍କ ଶିରକୁ ।

କାହିଁକି, କଣ ହେଲା ?—ଉଦ୍‌ବିଗ୍ନ କଣ୍ଠସ୍ୱର ଲଳିତାର !

ଉର୍ମିଳା କହିଲା—ପରଦିନ ଠିକ୍ ନଅଟାରେ ଅଜୟ ସାମନ୍ତ ଅଫିସରେ ପହଞ୍ଚିଥିଲେ । ତାଙ୍କୁ ଦେଖିବା ମାତ୍ରେ ପ୍ରବୋଧ ଦାସଙ୍କର ଖାସ୍ ପିଅନ କହିଲା—ସାହେବ, ଦ'ଥର ଆପଣଙ୍କ କଥା ପଚାରିଲେଣି । କହିଛନ୍ତି ଆପଣ ଆସିଲେ ସଙ୍ଗେ ସଙ୍ଗେ ଖବର ଦେବାକୁ ।

ପିଅନ ଖବର ଦେବାକୁ ଗଲା । ପର୍ଦ୍ଦା ବାହାରେ ଠିଆ ହୋଇଥାନ୍ତି ଅଜୟ ସାମନ୍ତ । ପିଅନ ସାଙ୍ଗେ ସାଙ୍ଗେ ଫେରି ପର୍ଦ୍ଦାଟିକୁ ଟେକିଧରି କହିଲା—ଭିତରକୁ ଯାଆନ୍ତୁ···

ଗୁଡ଼ୁ ଗୁଡ଼ୁ ମନରେ କମ୍ପିତ ପାଦରେ ଭିତରକୁ ଆସି ନମସ୍କାର କରି ଠିଆହେଲେ ଅଜୟ ସାମନ୍ତ । ପ୍ରବୋଧ ଦାସ ପ୍ରତିନମସ୍କାର କରି ମୁଲାଏମ ସ୍ୱରରେ କହିଲେ—ବସନ୍ତୁ...

ସଙ୍କୁଚିତ ହୋଇ ଚେୟାରରେ ବସିଲେ ଅଜୟ ସାମନ୍ତ ।

ଗୋଟିଏ ଫାଇଲ ଖୋଲୁ ଖୋଲୁ ପ୍ରବୋଧ ଦାସ କହୁଥାନ୍ତି—କାଲି ମୁଁ ଫେରି ଯାଇଥାନ୍ତି, କେବଳ ଆପଣଙ୍କର ପାଇଁ ଏଠାରେ ରହିବାକୁ ହେଲା । ଏହି କାଗଜ ଖଣ୍ଡିକ ନିଜ ହାତରେ ଆପଣଙ୍କୁ ଦେବି ବୋଲି...କଥା ଶେଷ କଲେ ନାହିଁ ପ୍ରବୋଧ ଦାସ ।

କମ୍ପିତ ହାତରେ କାଗଜ ଖଣ୍ଡିକ ନେଇ ଅଜୟ ସାମନ୍ତ ମନେ ମନେ ପଢ଼ୁଥିଲେ । ଅନ୍ୟ ଫାଇଲଗୁଡ଼ିକ ନେଇ ବ୍ୟସ୍ତ ରହିଲେ ଶିଳ୍ପପତି ପ୍ରବୋଧ ଦାସ ।

ଓଃ !...ଅଜୟ ବାବୁଙ୍କର କଥା ଶୁଣି ଫାଇଲ ଉପରୁ ମୁହଁ ଉଠାଇ ପ୍ରବୋଧ ଦାସ ତାଙ୍କ ଆଡ଼େ ଚାହିଁଲେ । ସ୍ମିତ ହସ ହସି କହିଲେ—କିଛି କହିବେ ?

କହିବି ଅଉ କଣ; ସାର୍ ! ମୁଁ କୃତାର୍ଥ । ଆଶୀର୍ବାଦ କରନ୍ତୁ ଯେଉଁ ଗୁରୁଦାୟିତ୍ୱ ଅର୍ପଣ କଲେ ତାହା ଯେପରି ସୁଷ୍ଠୁରୂପେ ତୁଲାଇ ପାରେ ।

ଆପଣ ପାରିବେ, ସେ ବିଶ୍ୱାସ ଅଛି ବୋଲି ମୁଁ ଦେଇଛି । ଆଚ୍ଛା ଆସନ୍ତୁ, ବର୍ତ୍ତମାନ ମୋତେ ଫେରିବାକୁ ହେବ ।

ଅଜୟ ସାମନ୍ତ ନମସ୍କାର କରି କହିଥିଲେ, ପଛରୁ ପୁଣି ପ୍ରବୋଧ ଦାସ ଡାକିଲେ—ଓ୍ୱାନ ମିନିଟ୍, ମିଃ ସାମନ୍ତ !

ଅଜୟ ସାମନ୍ତ ଫେରି ଆସିଲାରୁ ପ୍ରବୋଧ ଦାସ ପଚାରିଲେ—ଭଦ୍ର ମହିଳା ଆପଣଙ୍କ ସ୍ତ୍ରୀ, ନା ?

ହଁ ସାର୍ !—ମୃଦୁ ଉତ୍ତର ।

କେତେଦୂର ପଢ଼ିଛନ୍ତି ?

ଫାଇଲରେ ଦସ୍ତଖତ କରୁଥିବା ଅବସ୍ଥାରେ ପ୍ରଶ୍ନ ହେଲା ।

ମେଟ୍ରିକ୍‌ଟା ସବୁତା ପାଶ କରିଛୁ । ଟାଇପ ରାଇଟିଂ ଜାଣେ ।

ଉଲ୍ଲସିତ କଣ୍ଠରେ କହିଲେ ପ୍ରବୋଧ ଦାସ—ଟାଇପ ରାଇଟିଂ ଜାଣନ୍ତି ? ସ୍ପିଡ୍ କେତେ ?—ଜାଣେନା, ସାର୍ ! ଟାଇପ୍ ରାଇଟିଂ ଟ୍ରେନିଂ ସେ ବବାହ ପୂର୍ବରୁ ନେଇଥିଲି । ସେ ଆଜକୁ ଦେଢ଼ବର୍ଷ ତଳର କଥା, ପ୍ରାକ୍‌ଟିସ୍ ନାହିଁ. ସ୍ପିଡ୍ ଆଉ କେତେ ହୋଇଥିବ ?

ହସିଲେ ପ୍ରବୋଧ ଦାସ । ଖଣ୍ଡିଏ ସିଗାରେଟ୍ ଧରାଉ ଧରାଉ କହିଲେ, ତାଙ୍କର ସର୍ଭିସ କରିବାର ଇଚ୍ଛା ଅଛି କି ?

ଅଛି କି ନା ଜାଣେନା, ତେବେ ଆପତ୍ତି ସେ କରିବ ନାହିଁ ।

ବେଶ୍ ବୁଝି ମୋତେ କହିବେ । ଆସନ୍ତା ସଟର୍ ଡେ-ରେ ମୁଁ ଆସୁଛି—ଖବରଟା ମୋତେ ଦେବେ ।

ପ୍ରବୋଧ ଦାସଙ୍କୁ ଉଠିବାର ଦେଖି ଅଜୟ ସାମନ୍ତ ଆଉ ଗୋଟିଏ ନମସ୍କାର ପକାଇ ବାହାରି ଆସିଲେ । ଅଫିସ ସମୟ ହୋଇ ନଥାଏ ବୋଲି ଅନ୍ୟାନ୍ୟ କର୍ମଚାରୀମାନେ ଆସି ନଥାନ୍ତି । ବଡ଼ବାବୁ ଅର୍ଥାତ୍ ଅଫିସ ସୁପରିନ୍‌ଟେନଡେଣ୍ଟ ଆସିଲେ ହେଡ଼କ୍ଲର୍କ ଗୋବିନ୍ଦ ପଟ୍ଟନାୟକଙ୍କ ପାଖରୁ ଚାର୍ଜ ନେବାର ବନ୍ଦୋବସ୍ତ କରିବେ । ଆଜ ଦିନଟା ଭଲ, ଚାର୍ଜ ନେଇସିବା ଉଚିତ । ଗୋବିନ୍ଦ ପଟ୍ଟନାୟକ ହେଡ୍ ଅଫିସ ସୁଜାନ୍ତପୁରକୁ ଯାଉଛନ୍ତି । ତାଙ୍କୁ ମଧ୍ୟ ସୁବିଧା ହେଲା, ଘର ପାଖରେ ରହିବେ । ଷ୍ଟୋରର ଚାର୍ଜ ନେବେ ଅମିୟ ସରକାର ।

ଥରେ, ଦୁଇଥର ତିନିଥର, ମନେମନେ କେତେଥର ଅର୍ଡରଟିକୁ ପଢ଼ିଲେ ଅଜୟ ବାବୁ । ଷ୍ଟୋର ଉପରକୁ ହେଡ଼ କ୍ଲର୍କ । କମ ସୌଭାଗ୍ୟର କଥା ନୁହେଁ । ସିନିୟର ସେ, ସୁତରାଂ କେହି ଅସନ୍ତୁଷ୍ଟ ହେବେ ନାହିଁ । ଏଣେ ସବିତା ଯଦି ଚାକିରି ଟିଏ ତେବେ ଟାଇପିଷ୍ଟ ପୋଷ୍ଟଟା···ସ୍ୱାମୀ ସ୍ତ୍ରୀ ଏକା ଜାଗାରେ କାର୍ଯ୍ୟ କରିବେ, ବେଶ୍ ଭଲ ହୁଅନ୍ତା । ନରେନ୍ଦ୍ର ବାବୁ, ଯିଏ ବର୍ତ୍ତମାନ ଟାଇପିଷ୍ଟ ଅଛନ୍ତି ସିଏତ' ଟ୍ରାନ୍‌ସଫର ପାଇଁ କେତେଥର ସୁପର ଟେଣ୍ଡେଣ୍ଟଙ୍କୁ କହିଲେଣି ।

ଏଇ ଶୁଭ ସମ୍ବାଦଟା ସବିତା କିପରି ପାଇବ ସେ କଥା ଭାବିଲେ ଏଥର । ଅଫିସରୁ ବାହାରୁ ବାହାରୁ ପାଞ୍ଚଟା, ଯଦି ଆଜି ଗୃର୍ଜ ଦିଆ ନଥା ହୁଏ ତେବେ ଆହୁରି ଘଣ୍ଟାଏ ଡେରି ହୋଇପାରେ ।

ଜଣ ଜଣ ହୋଇ ଦେଖାଦେଲେ । ଅଜୟ ବାବୁ କାହାକୁ କିଛି କହିଲେ ନାହିଁ । କିନ୍ତୁ ଅଧଘଣ୍ଟା ପରେ ସମସ୍ତେ ଆସି ତାଙ୍କୁ ଘେରିଯାଇ ଶୁଭେଚ୍ଛା ଜ୍ଞାପନ କଲେ ଓ ତାହିଁ ସଙ୍ଗେ ସଙ୍ଗେ ଗୋଟାଏ ଜଳଯୋଗର ଦାବୀ ଜଣାଇଲେ ।

ସେମାନଙ୍କ କଥାରେ ରାଜି ହେଲେ ଅଜୟ ବାବୁ ।

ସନ୍ଧ୍ୟାବେଳେ ଘରକୁ ଆସି ଗୃହିଣୀଙ୍କୁ ଜଣାଇଲେ । କହିଲେ, ଆହୁରି ଗୋଟିଏ ସୁଖବର ଅଛି—ଅବକା ନୁହେଁ, ଖିଆପିଆ ପରେ ଶୋଇଲା-ବେଳେ କହିବ ।

ସ୍ତ୍ରୀ କିନ୍ତୁ ସାଙ୍ଗେ ସାଙ୍ଗେ ଶୁଣିବାପାଇଁ ଜିଦ୍ ଧରି ବସିଲା । ଅଗତ୍ୟା କହିବାକୁ ହେଲା ।

ତୁମର ମତ କଣ ?—

ମୁଁ ରାଜି···

ଟିକଏ ସ୍ବଚନ୍ଦ୍ର କୁହ ।

ସ୍ବଚ୍ଛ କଣ, ଚନ୍ଦ୍ର କଣ ? ତୁମେ ଅଫିସକୁ ଗଲେ ମୋର ଆଉ କି କାମଥାଏ । ଖାଲି ଶୋଇ ଶୋଇ ଉପନ୍ୟାସ ପଢ଼ି ପଢ଼ି ଦିନ କଟିଯାଏ । ଆଜିକାଲି ପୁଣି ଉପନ୍ୟାସର କଣ ଦାଗ ବାଇଶ ଅଛି ? ବରଂ ଗୃକସ୍ପ କଲେ ଟୁ ପାଇସ୍ ଘରକୁ ଆସିବ ।

ଶେଷରେ ଗୃକସ୍ପ କଲା ସବିତା ସାମନ୍ତ ।

ମହାକାଳର କ୍ଷୁଧାର ବଳି ହେଲା ସବିତା ସାମନ୍ତ ନାମ୍ନୀ ଅଠର ବର୍ଷର ସ୍ୱାସ୍ଥ୍ୟବତୀ ସୁନ୍ଦରୀ ବିବାହିତା ଗୋଟିଏ ନାରୀ ।

ଦୁଇମାସ ପରେ ଦିନେ ଡାକରା ପଡ଼ିଲା ସବିତାକୁ ।

ପ୍ରବୋଧ ଦାସଙ୍କ ଚେମ୍ବରକୁ । ଏଇ ପ୍ରଥମ ସେ ଗୋଡ଼ ଦେଲା ଚେମ୍ବରରେ ।

ସ୍ତ୍ରୀ'ର ଗୋଟିଏ ପୁଅ ସନ୍ତାନ ଜନ୍ମ ହୋଇଛି, ତେଣୁ ପ୍ରବୋଧ ଦାସ ଅସୁସ୍ଥ ସ୍ତ୍ରୀଙ୍କୁ ଛାଡ଼ି ଆସି ପାରୁନଥିଲେ । ଦରକାରୀ ଫାଇଲ ପଠ ହେଡ଼କ୍ଲର୍କ ଅଜୟ ସାମନ୍ତ ଜିପ୍‌ରେ ବସି ନେଇ ଯାଉଥିଲେ ସୁବର୍ଣ୍ଣପୁରକୁ । କେବେହେଲେ ସବିତା ସମ୍ବନ୍ଧରେ କୌଣସି କଥା ଅଜୟ ବାବୁଙ୍କୁ ପଚାରି ନାହାନ୍ତି ପ୍ରବୋଧବାବୁ । ପଚାରି ଥିଲେ ସବିତା ତାଙ୍କ ପାଖରୁ ଶୁଣିଥାନ୍ତେ । ଆଜି ଡାକରା ଶୁଣି ଗୋଡ଼ ଦୁଇଟା ଥରି ଉଠିଲା । କେଜାଣି କଣ ଭୁଲ୍ ତ୍ରୁଟି ଦେଖାଇ ଗାଳିମନ୍ଦ ଦେବେ ଖୋଦ୍ ମାଲିକ ।

ଧୀରେ ଧୀରେ ଶଙ୍କିତ ମନରେ ଭିତରକୁ ଆସି ପ୍ରଣାମ କଲା ସବିତା ।

ବସନ୍ତୁ—

କୁଣ୍ଠିତ ଭାବରେ ବସିଲା ସାମନା ଚଉକିଟାରେ ।

ଅଫିସ କେମିତି ଲାଗୁଛି ?—ପଚାରିଲେ ପ୍ରବୋଧ ଦାସ ।

ବେଶ୍ ଭଲ···ସଂକ୍ଷିପ୍ତ ଉତ୍ତର ।

ମନଦେଇ କାମ କରନ୍ତୁ. ଫ୍ୟୁଚର୍‌ରେ ସବୁ ଯାଆନ୍ତି ବେଶ୍ ଦୁଇ ପଇସା ପାଇବେ । ତା'ଛଡ଼ା ଇନ୍‌କ୍ରିମେଣ୍ଟ । ସଂସାରକୁ ଆସିଛନ୍ତି, ସବୁ ସ୍ୱଚ୍ଛଳଭାବେ ଚଳନ୍ତି ସ୍ୱକଷ୍ଟ କରି କି ଲାଭ ?

ଫ୍ୟୁଚର୍‌ରେ ମୋର ଆପତ୍ତି ନାହିଁ, ସାର୍ ।

ପିଅନ ଦୁଇଟି କପି ପିଆଲା ଆଣି ଗୋଟାଏ ସାହେବଙ୍କ ପାଖରେ ଓ ଅନ୍ୟଟି ସବିତା ପାଖରେ ରଖିଲା । ସବିତା ଚାହିଁଲା ପିଅନ୍‌ଟିକୁ ।

ଆପଣ ଖାଆନ୍ତୁ ।

ପିଅନ ବାହାରକୁ ବାହାରି ଆସିଥିଲା ।

ମୁଁ···ଦ୍ୱିଧାଜଡ଼ିତ କଣ୍ଠ ସ୍ୱର ସବିତାର ।

ପ୍ଲିଜ୍, ଖାଆନ୍ତୁ—ଥଣ୍ଡା ହୋଇଯିବ, ଥଣ୍ଡା କଫି ସ୍ୱାସ୍ଥ୍ୟ ପକ୍ଷରେ କ୍ଷତିକାରକ ।

ଓଠେଇ ଓଠେଇ ସ୍ପର୍ଶ ଦେଲା ପିଆଲାରେ ସବିତା ।

କଣେଇ କଣେଇ ଦେଖିଲି ପ୍ରବୋଧ ଦାସ ଯେପରି ଚୁମ୍ବନଗୁଡ଼ିକ ଗଣୁଛନ୍ତି । ଲଜ୍ଜା ହେଲା, କିନ୍ତୁ ଉପାୟ ନାହିଁ । କୌଣସି ପ୍ରକାରେ ନିଃଶେଷ କଲି କପଟିକୁ ।

ହାତଘଡ଼ି ଦେଖିଲେ ସାହେବ । କହିଲେ—ବର୍ତ୍ତମାନ ବାହାରିବାକୁ । ସ୍ତ୍ରୀ ଏପର୍ଯ୍ୟନ୍ତ ସୁସ୍ଥ ହୋଇ ନାହାନ୍ତି—ଏଣୁ କୌଣସି କାର୍ଯ୍ୟରେ ମନ ଲାଗେନା । ଆପଣ ଯାଆନ୍ତୁ—

ନମସ୍କାର କରି ଆସୁ ଆସୁ ସବିତା ଭାବିଲା—ସାହେବ ତାଙ୍କର ସ୍ତ୍ରୀକୁ ଖୁବ୍ ଭଲ ପାଆନ୍ତି । ତାଙ୍କର ଅସୁସ୍ଥତା ହେତୁ ଖୁବ୍ ଚିନ୍ତିତ । ଭଲ ନପାଇବେ କାହିଁକି ? ଅପୂର୍ବ ରୂପସୀ, ଲକ୍ଷ୍ମୀ ପ୍ରତିମା ପରି ରୂପ—ଭାଗ୍ୟବତୀ ନହେଲେ ଏପରି ସ୍ୱାମୀ ସ୍ତ୍ରୀର ମିଳନ କଣ ହୁଅନ୍ତା ?

ଅଫିସରୁ ଫେରିବା ବାଟରେ ଅଜୟଂ ବାବୁଙ୍କୁ ସେ ସାହେବଙ୍କ କଥା କହିଥିଲା । ସବୁ ଶୁଣି ଅଜୟ କହିଥିଲେ—ଜ୍ୟୋତିଷକୁ ମୁଁ ତୁମର ଓ ମୋର ଜାତକ ଦେଖାଇଥିଲି ! ସେ କହିଛନ୍ତି, ଆମର ବର୍ତ୍ତମାନ ଏପରି ବେଳ ପଡ଼ିଛି ଯେ ମାଟି ଧରିଲେ ସୁନା ହୋଇଯିବ । ଦେଖୁଛି ତାଙ୍କ କଥା ଠିକ୍ । ଚାକିରିଟା ସେ ଝଡ଼େଇ ନେଇଛି ।

ସବିତା ଏକ ଅଭିଯୋଗବାଣୀ ଶୁଣେଇଲା ।

ଆମର ଷ୍ଟୋରବାବୁ ଅମିୟ ସରକାରଙ୍କୁ ଦେଖା ଘଣ୍ଟାଏ ଅଧଘଣ୍ଟାଏ ଅନ୍ତରରେ ଆସି କହୁଛନ୍ତି—ଆପଣ ଖୁବ୍ ଭାଗ୍ୟବତୀ ମିସେସ୍ ସାମନ୍ତ ।

ପଚାରିଲି - କାହିଁକି ?

ଶହେଟା ଆପ୍ଲିକେଣ୍ଟ ମଧ୍ୟରୁ ଆପଣ କେବଳ ସିଟ୍ ଅଳଂକୃତ କଲେ ।...ଏ କଥାରେ ରାଗିବାର ନୁହେଁ, କିନ୍ତୁ ମୁହଁଟାକୁ ମୋ ମୁହଁ ପାଖକୁ ନେଇ ଆସି କହୁଛନ୍ତି ଖରାପ ଲାଗୁଛି । ତାପରେ ବେଳେବେଳେ ଆସି କହୁଛନ୍ତି—ବୁଲନ୍ତୁ, ଟି’ ଖାଇ ଅସିବେ । ଏକୁଟିଆ ବସିବାକୁ କଣ ଆପଣଙ୍କୁ ଭଲ ଲାଗୁଛି ? ମୋର ଶାଢ଼ୀ, ଗଳାର ହାର, ହାତର ଚୁଡ଼ି, ଗୋଡ଼ର ଚପଲ, ନଖରେ ଲଗିଥିବା ନେଲପଲିସ ଏ ସମସ୍ତ ରୂପ ସହିତ

ଠିକ ମ୍ୟାଚ କରୁଛ ବୋଲି ସବୁଦିନେ ସେଇ ଏକା କଥା କହନ୍ତି । କେତେଥର ଛୁଇଁବା ପାଇଁ ଚେଷ୍ଟା କଲେଣି, ମାତ୍ର ତାଙ୍କର ଗୁଣ ଜାଣି ପାଖକୁ ଆସିବାର ଦେଖିଲେ ସାବଧାନ ହୋଇଯାଏ । ଏମିତ ଲୋକକୁ ମଣିଷ କେମିତ ପାରିବ କୁହତ ?

ହସି ହସି ଅଜସ୍ର ବାବୁ କହିଲେ—ତୁମେ ତ' ଠିକ୍ ଅଛ, ଖବରର କଣ ଅଛି ? ଅଫିସରେ ଲେଡ଼ି କ୍ଲର୍କ ଥିଲେ ସହକର୍ମୀ ମାନେ ଯେମିତ ଟିକଏ ଦୁଅନ୍ତି । ଆଜ ଅମାସ୍ତ ବାବୁ କହିଲେ, କାଲି ଯୋଗିନ୍ଦ୍ର ବାବୁ କହିବେ, ପରିବରଦିନ ସୁପରିନ୍‌ଟେନ୍‌ଡେଣ୍ଟ କହିବେ, ଦିନେ ହୁଏତ ମାଲିକ କହି ପାରନ୍ତି—ସେଗୁଡ଼ାକ କ'ଣ ଧର୍ତ୍ତିବ୍ୟ ଭିତରେ ଯାଏ ?

ଯାଃ, ତୁମେ ବଡ଼ ପାଜିଲ…

ଆଉ ଦିନେ—

ସବିତା ସାମନ୍ତ ଟିଫିନ୍ ପରେ ଅଜସ୍ର ସାମନ୍ତଙ୍କ ସିଟ୍ ପାଖରେ ଆସି ଠିଆହେଲା । କଣ ଗୋଟାଏ ଫାଇଲ ନେଇ ପୃଷ୍ଠା ଓଲଟାଉ ଥିଲେ ଅଜସ୍ର ସାମନ୍ତ, ସବିତାକୁ ଦେଖି କହିଲେ କଣ ହେଲା, କୁହତ ?

ଗୋଟାଏ ବିଦେଶ ଭ୍ରମଣ ଯୋଗ କପାଳରେ ଜୁଟିଛି ।

କହୁ କହୁ ସାମନା ଚେୟାରରେ ବସି ପଡ଼ିଲା ସବିତା ।

ଜ୍ୟୋତିଷକୁ ହାତଟା ଦେଖାଇଥିଲେ ବୋଧହୁଏ ?

ଯାଃ, ସବୁବେଳେ ଥଟ୍ଟା ଭଲ ଲାଗେନା । ମୋର ହାତ ପରପୁରୁଷ ଛୁଇଁବ ଏତେ ସାହସ ?

ଅମାସ୍ତ ଦରକାର ଯେଇ ବାଟ ଦେଇ ଯାଉ ଯାଉ ଖଣ୍ଡିକାଶ ମାରି ଗ୍ଲାଲଗଲେ । ସବିତା ମୁହଁଟାକୁ ବିକୃତ କରି ବୁଲାଇ ନେଲା ଚଟ୍‌କରି । କହିଲା ବିରକ୍ତ କଣ୍ଠରେ—ପୋଡ଼ା ମୁହଁଟା ମରୁନାହିଁ । ଗ୍ଲୁହିଁବାର ଢଙ୍ଗ ଦେଖ ।

ସେ କଣ ସ୍ତ୍ରୀକୁ ବୁଦ୍ଧି ଟିକଏ ବ୍ୟବସ୍ଥା କରି ଦେଲେତ' ଆଉ ସେ ଗ୍ଲାମ୍ବଲିଙ୍ଗ୍ କରନ୍ତା ନାହିଁ…କହି ଦୁଷ୍ଟାମି ହସ ହସିଲେ ଅଜସ୍ର ସାମନ୍ତ ।

ତୁମେ ଗୋଟାଏ ଭିଏ ।

ହଉ ହେଲା ! ଭ୍ରମଣ ଯୋଗ କେବେଠୁ ପଡ଼ୁଛି ! ଛୁଟି ତ' ନେବାକୁ ହେବ ?—

ବୋକା କଉଁଠିକାର ! —

ହାଇ୍ ! ମୁଁ ବୋକା ? ହେଡ଼ କ୍ଲର୍କ ବୋକା ହେବାମାନେ ଅଫିସ୍‌ଟାଯାକ ସମସ୍ତେ ବୋକା ।

ମୁଁ ଟୁର୍‌ରେ ଯାଉଛି ।

ଟୁର୍ ! କାହା ସାଙ୍ଗରେ ?—ବସ୍ମୟଭରା କଣ୍ଠ, ମୁହଁଟା ହାଁକରି ସବିତାଆଡ଼େ ଏକ ଦୃଷ୍ଟିରେ ଚାହିଁ ରହିଲେ ଅଜୟବାବୁ ହେଡ଼କ୍ଲର୍କ ।

ସାହେବଙ୍କ ସାଙ୍ଗରେ ଯାଉଛି, ମାସେଯାଏ ସେଠାରେ ରହିବାକୁ ହେବ । ତାଙ୍କର ସ୍ତ୍ରୀ ଅସୁସ୍ଥ, ସେଠାରେ ମାସେ ରହିବେ ବୋଲି ଡାକ୍ତର ପରାମର୍ଶ ଦେଇଛନ୍ତି । ମୁଁ ଗଲେ ଅଫିସ କାମ ବି ହେବ, ତାଙ୍କର ସ୍ତ୍ରୀଙ୍କର ଦେଖା ଶୁଣା ବି କରିପାରିବ ।

ଆଇ ସି…ତାହାହେଲେ ମାସେଯାଏ ମୋତେ ବିରହିଣୀ ଜୀବନ ଯାପନ କରିବାକୁ ହେବ ।

ବିରହିଣୀ ମୁଁ ତ' ରହିବି…

କିଏ ଜାଣେ । ନାରୀ ଚରିତ୍ର ଦେବା ନଜାନାତି—କୁତୋ ମନୁଷ୍ୟା…ଶୁଣ୍, କେଉଁଠିକି ଯିବ ।

ଦାର୍ଜିଲିଂ ।

ଛଳନାମୟୀ ମୋହିନୀ ନାରୀ, ଟିକିଏ ସାବଧାନରେ ଥିବ ।

ହସିଲା ସବିତା ।

ଏ ହସ ସର୍ବନାଶର ହସ !…ଉର୍ମିଳା କହିଲା…ଏହି ହସ ଯୋଗୁଁ ଥରେ ସୁନ୍ଦର ଟ୍ରୟ ନଗରୀ ଧ୍ୱଂସ ପାଇଥିଲା ଏହା ତ' ଜାଣ, ଲଳିତା ! ଏ

ହସ ସର୍ବନାଶ କରିଥିଲା ଗୋଟାଏ ସୁନ୍ଦର ସଂସାରକୁ । ଧୀରେ ଧୀରେ ଗୋଟିଏ ପୁରୁଷ ମୃତ୍ୟୁର କାଳଫାଶ ଭିତରକୁ ଆଗଉଥିଲା ।

ତୁମର ହସଟି ଅତି ଚମତ୍କାର, ସବିତା !···ପ୍ରବୋଧ ଦାସଙ୍କର କଣ ଗୋଟାଏ କଥାରେ ହସି ଉଠିଲା ସବିତା । ଦୁହେଁ ସନ୍ଧ୍ୟାବେଳେ ସୁଧାପାନ କରୁଥିଲେ । ଆରଘରେ ସ୍ତ୍ରୀ ମନ୍ଦାକିନୀ ଦେବୀ ନିଦ ଔଷଧ ଖାଇ ଗଭୀର ନିଦ୍ରାଚ୍ଛନ୍ନ । ପରିଚାରିକା ଓ ପାଚିକା ଭିତରଆଡ଼େ ଥାଆନ୍ତି ।

ପାନାହାର ସମୟରେ କେତେଥର ପ୍ରବୋଧ ଦାସଙ୍କ ଆଙ୍ଗୁଳି ସ୍ପର୍ଶ କରିଥିଲା ସବିତାର ଚମ୍ପାକଳି ସଦୃଶ ଅଙ୍ଗୁଳିକୁ ।"ଉତ୍ତେଜନା ସେ ଅନୁଭବ କରୁଥିଲା. କିନ୍ତୁ ଚୁପି ରହିଥିଲା ପ୍ରାଣପଣରେ । ଆପଣ' ତୁମେ ହେବା ସମୟକୁ ସବିତା ଅଶ୍ୱସ୍ତି ବୋଧ କରୁଥିଲା, କିନ୍ତୁ ମୁହଁ ଫିଟାଇ କହିବା ଲାଗି ସଙ୍କୋଚ ବୋଧ କରୁଥିଲା ।

ରାତ୍ରି ଭୋଜନ ପରେ ସବିତା ଶୋଇବାକୁ ଯାଉଥିଲା ନିଜ ରୁମ୍‌କୁ । ସମସ୍ତେ ଯିଏ ଯାହାର ରୁମ୍‌କୁ ଚାଲିଗଲେଣି, ମନ୍ଦାକିନୀ ଦେବୀଙ୍କ ଘରେ ସବିତାର ଶଯ୍ୟା—ପାଖ ଘରେ ଥାଆନ୍ତି ପ୍ରବୋଧ ଦାସ । ସବିତା ଦୁଆରଟାକୁ ବନ୍ଦ କରିବାକୁ ଯାଉଛି, ପ୍ରବୋଧ ଦାସ ଉପସ୍ଥିତ ହୋଇ ମୃଦୁ କଣ୍ଠରେ କହିଲେ—ଟିକିଏ ଶୁଣିଯାଅ ସବିତା ।

ଦାହାରଆଡ଼୍ ଦୁଆର ଆଉଜାଇ ଆଣି ପ୍ରବୋଧ ଦାସଙ୍କ ପଛେ ପଛେ ପଶିଲା ତାଙ୍କ ରୁମ୍‌କୁ—ଟେବୁଲ ଉପରେ ହ୍ୱିସ୍କିର ଦୁଇଟି ବୋତଲ ଓ ଦୁଇଟି ଗ୍ଲାସ ରହିଛି । ପ୍ରବୋଧ ଦାସଙ୍କର ଭିତରେ ସାମନା ଚେୟାରରେ ବସିଲା ସବିତା । ବୋତଲର ମୁହଁ ଖୋଲିଲେ ପ୍ରବୋଧ ଦାସ—ଦୁଇଟି ଗ୍ଲାସରେ ଢାଳିଲେ । ଗୋଟିଏ ଗ୍ଲାସ ସବିତା ଆଡ଼କୁ ବଢ଼ାଇ ଦେଇ ଦେଇ କହିଲେ—ତୁମକୁ ଭୀଷଣ ଅଶ୍ୱସ୍ତି ଧରିଛି, ଏହି ସାମାନ୍ୟ ଟିକିଏ ଖାଇନିଅ, ଶରୀରଟା ଫ୍ରେସ ହୋଇଯିବ, ନିଦ ମଧ୍ୟ ହେବ ।

ମୃଦୁ ଆପତ୍ତି କରିଥିଲା ସବିତା । କିନ୍ତୁ ଶେଷ ପର୍ଯ୍ୟନ୍ତ···
ଆଉ ଟିକିଏ ଗ୍ଲାସରେ ଢାଳି ଦେଲେ ପ୍ରବୋଧ ଦାସ ।

ସବିତାର ମୁଣ୍ଡ ଭିତରଟା ଝିମ୍ ଝିମ୍ ହୋଇ ଆସିଲା । ଘରର ପ୍ରତ୍ୟେକ ଜିନିଷ ଦୁଇଟା ତିନଟା ବୋଲି ଆଖିକୁ ଦେଖାଗଲା—ଏକ ସମୟରେ ସମସ୍ତ ଝାପସା ଦେଖାଗଲା ଆଖିକୁ । ଟେବୁଲ ଉପରେ ମୁଣ୍ଡଟାକୁ ରଖିଦେଲା ସେ ।

ସବିତା—

ଉଁ…ଅତି କ୍ଷୀଣ କଣ୍ଠସ୍ୱର ସବିତାର । ଖୁବ୍ ଦୂରରୁ ସେ ଯେପରି ଉତ୍ତର ଦେଉଛି ।

ଧୀରେ ଧୀରେ ସବିତା ପାଖକୁ ଆଗେଇ ଆସିଲେ ପ୍ରବୋଧ ଦାସ । ନିଃସଙ୍କୋଚରେ କାଖ ଓ ଆଣ୍ଠୁ ତଳେ ହାତଦେଇ ଟେକି ନେଇ ଆସି ଶଯ୍ୟାରେ ଶୁଆଇ ଦେଲେ ।

ସବିତା ସବୁ ଦେଖୁଥାଏ. ଅନୁଭବ ଶକ୍ତି ତାର ଶିଥିଳ । ଆଲୁଅଟା ଲିଭିଯିବା ପର୍ଯ୍ୟନ୍ତ ସମସ୍ତ ତାର ମନେଥିଲା, ତାପରେ ଆଉ କିଛି ମନେ ନାହିଁ ।

ସକାଳେ ନିଦ ଭାଙ୍ଗିଲା ଡେରିରେ । ନିଜର ରୁମରେ ଓ ଶଯ୍ୟାରେ ଶୋଇଛି ସବିତା । ଗୋଟି ଗୋଟି ହୋଇ ମନେ ପଡ଼ିଲା ସବୁ ତାର । ଅନୁତାପ ଜାଗିଲା ମନରେ । କିନ୍ତୁ ଉପାୟ କଣ…

ଶଯ୍ୟା ଉପରେ ବସି ଚିନ୍ତା କରୁଥାଏ ସବିତା, ଦୁଆର ମୁହଁରେ ସ୍ଥିର ଦେଖାଗଲା । ଲୁଗାପଟା ସଜାଡ଼ି ନେଇ ଚାହିଁଲା ଦୁଆର ଆଡ଼େ ।

ଅପରାଧୀ ପରି 'ଧୀର ସଶଙ୍କିତ ଭାବେ ଭିତରକୁ ଆସିଲେ ପ୍ରବୋଧ ଦାସ…

ଭାବିଥିଲେ ସବିତା ତାଙ୍କୁ ଅପମାନ କରିବ । କିନ୍ତୁ ସବିତା ଧୀର ଶାନ୍ତ କଣ୍ଠରେ କହିଲା—ଏ କଣ କଲେ ?

ସବିତା ।—ଧୀରେ ପାଖରେ ଆସି ବସିଲେ ପ୍ରବୋଧ ଦାସ । ଗୋଟିଏ ହାତ ସବିତାର ପିଠି ଉପରେ ରଖିଲେ । କିଛି କହିଲାନାହିଁ ସବିତା । ପ୍ରବୋଧ ଦାସ କହିଲେ—ଅପରାଧୀ ବୋଲି ମନେ କରନା, ସବିତା ! ପ୍ରଥମ ଦେଖା ଦିନର କଥା ତୁମର ମନେଅଛି ନିଶ୍ଚୟ । ମୁଁ ତୁମକୁ ସେଇ-

ଦିନରୁ ଭଲ ପାଉଛୁ । ଭଲ ପାଇବା ଅପରାଧ ନୁହେଁ, ଏବଂ ତୁମେ ମୋତେ ଭଲ ପାଉଛ ଏହା ତୁମର ହାବଭଙ୍ଗୀରୁ ଜାଣିପାରି ମୁଁ ସାହସ କରୁଛି ।—

ତାହା ଯଦି ଜାଣିଥାଅ ମନ ନେବାଲାଗି ଚେଷ୍ଟା ନକରି ମୋତେ ଅଜ୍ଞାନ କରାଇ—

ମୁଁ କ୍ଷମା ଚାହୁଁଛି…

ଛି ଛି, ତୁମେ କ୍ଷମା ଚାହୁଁଛ, ଏ କଣ ଈଶ୍ୱର କାରଣ । କେବଳ ଯଥେଷ୍ଟ ଦଅ—କୌଣସି ଦିନ ଯେପରି ଅବହେଳା ପ୍ରଦର୍ଶନ ନକର । ତୁମ ପାଖରୁ ଅପମାନିତ ହେଲେ ମୋର ମୁଣ୍ଡ ଗୁଞ୍ଜିବାର ସ୍ଥାନ ପୃଥିବୀରେ ପାଇବି ନାହିଁ ।

ଲଳିତା ଶୁଣୁଥାଏ ।

ବିରାଟ ଗୋଟିଏ ସେକ୍ରେଟେରିଏଟ୍ ଟେବୁଲ ପାଖରେ ବସିଥାଏ ଲୋକଟି ।

ଘରେ ଅନ୍ୟ ଆଲୋକଗୁଡ଼ିକ ଲିଭାଇଦିଆ ହୋଇଥାଏ । କେବଳ ଟେବୁଲ ଲାମ୍ପଟି ଜଳୁଥାଏ, ଲାମ୍ପର ଆଲୋକ ଲୋକଟିର ହାତ ଦୁଇଟି ଉପରେ କେବଳ । ଆଲୋକର ସ୍ଥଳ ମୁହଁରେ ପଡ଼ୁଥିବା ସତ୍ତ୍ୱେ ତାହା ପରିଷ୍କାର ନୁହେଁ । ଏହାଦ୍ୱାରା ଲୋକଟିର ମୁହଁ ଦେଖି ଚିହ୍ନିବାର ଉପାୟ ନଥାଏ ।

ହାତ ପାଖରେ ଗୋଟିଏ ବିରାଟ କୋଠାର ବାକ୍ସ । ଲୋକଟି ବାକ୍ସର ତାଲା ଖୋଲିଲା । ଆଲୋକରଶ୍ମି ପଡ଼ିଲା ବାକ୍ସ ଭିତରେ । କେତେଗୁଡ଼ିଏ ସାର୍ଟିକ ସରଞ୍ଜାମ ଆଲୋକର ସ୍ପର୍ଶରେ ଝଲମଲ ହୋଇ ଦିଶିଲା ।

ଲୋକଟି ଯନ୍ତ୍ରର ଗୋଟିଏ ବୋତାମ ଉପରେ ଅଙ୍ଗୁଳିର ସ୍ପର୍ଶ ଦେଲା । ବାଁ ହାତରେ ଟେଲିଫୋନର ରିସିଭର ଧରି କାନରେ ଲଗାଇଲା ।

ହ୍ୟାଲୋ ! ଜିରୋ-ଜିରୋ-ନାଇନ୍‌···ଲୋକଟି କହିଲା ।

ଅପର ପକ୍ଷରୁ ଗୋଟିଏ ଉତ୍ତର ଆସିଲା—ସ୍ପିକିଂ, ସାର୍‌···

ନମ୍ବର ସେଭେନ ଅଫିସରେ ଅଛି କି ?

ଅଛି, ସାର୍‌···

ତାକୁ ପଠାଇଦିଅ···

ରିସିଭର ରଖିଦେଲା ଲୋକଟି । ଟେବୁଲ ଲ୍ୟାମ୍ପର ଆଲୋକ ଲିଭାଇ-ଦେଇ ସ୍ୱଳ୍ପ ଶକ୍ତିର ଗୋଟିଏ ସବୁଜ ରଙ୍ଗର ଆଲୋକ ଜଳାଇଦେଲା । ଏଥର ଆଉ ଲୋକଟିକୁ ଦେଖାଗଲା ନାହିଁ । ଧୀରେ ଧୀରେ ଡାହାଣ ପାଖରେ ଥିବା ଗୋଟିଏ ଦ୍ୱାର ଉନ୍ମୁକ୍ତ ହେବାକୁ ଲାଗିଲା । ଦେଖାଗଲେ ଗୋଟାଏ ଛାୟାମୂର୍ତ୍ତି । ସର୍ବାଙ୍ଗ ତାର କୃଷ୍ଣବର୍ଣ୍ଣ ପୋଷାକରେ ଆବୃତ ।

ଛାୟାମୂର୍ତ୍ତି ଭିତରକୁ ଆସିବା ପରେ ପରେ ଦୁଆରଟା ଆପେ ଆପେ ବନ୍ଦ ହୋଇଗଲା ।

ନମ୍ବର ସେଭେନ···ଛାୟାମୂର୍ତ୍ତି ଉଚ୍ଚାରଣ କଲା । ଗଳା ତାର ଥରୁଥାଏ ।

କୋନ୍‌ ?···

ଜୁପିଟର···ହେଡ୍‌ପର କର୍ମୀ ତ କଣ୍ଠସ୍ୱର ନମ୍ବର ସେଭେନ ।

ସିଟ୍‌ ଡାଉନ···

ଅଦୂରରେ ଖଣ୍ଡିଏ ଚେୟାର ଦେଖିପାରିଲେ ଜୁପିଟର । କର୍ମୀ ତ ପଦରେ ଯାଇ ବସିଲା ।

ସ୍ତବ୍ଧ । ଘରଅଡ଼ ସ୍ତବ୍ଧ । ଘରଟା ମୃତ୍ୟୁପରି ଖାଁ-ଖାଁ କରୁଥାଏ । ଟେବୁଲ ପାଖରେ ଯେଉଁ ଲୋକଟି ବସିଛି ସେ ମଧ୍ୟ ନୀରବ । କଣ ଗୋଟାଏ କାର୍ଯ୍ୟନେଇ ସେ ବ୍ୟସ୍ତ ।

ଆହୁରି କେତୋଟି ମୁହୂର୍ତ୍ତ ଅତିବାହିତ ହୋଇଗଲେ । ଜୁପିଟର ଆଉ ନୀରବ ରହି ପାରିଲା ନାହିଁ । ଧୀର କଣ୍ଠରେ ଡାକିଲା—କମରେଡ୍‌···

ସାମନାରେ ବସିବାକୁ ଭୟ ଲାଗୁଛି ?···କମରେଡ଼ କହିଲା ।

ଶୁଣିଲ ଆପଣ ଡକାଇଛନ୍ତି, କଣ ଜରୁରୀ କାମଅଛି ବୋଲି ଶୁଣିଲି ।

ଆଉ ଟିକଏ ଅପେକ୍ଷା କର । ଜଣେ ଆସିବାର ଅଛି—

ଟୋଟାଏ ଯାନ୍ତ୍ରିକ ଶବ୍ଦ ଟେବୁଲର ଏକ ପାଖରେ ଥିବା ଯନ୍ତ୍ରାଧାରରୁ ଉଦ୍ଭୂତ ହେଲା । କମ୍ରେଡ୍ ବାଁ ହାତରେ ରିସିଭର ଉଠାଇ କାନ ପାଖକୁ ଆଣିଲେ । ଅପର ପକ୍ଷ ସହିତ କ ଭାଷାରେ କଥାବାର୍ତ୍ତା ହେଲେ ଜୁପିଟର ତାହା ବୁଝି ପାରିଲା ନାହିଁ । କେବଳ ଏତକ ବୁଝିଲା ନମ୍ବର ଇଲେଭେନ୍···

ଏହାପରେ ପୁଣି ନୀରବତା ।

ଦୁଆର ଖୋଲିବାର ଯାନ୍ତ୍ରିକ ଶବ୍ଦରେ ଫେରି ଚାହିଁଲା ଜୁପିଟର । କମରେଡ୍ ଆଡ଼େ ଚାହିଁଲା । କମ୍ରେଡ ଯେପରି ଦୁଆର ଖୋଲିବା ଶବ୍ଦ ଶୁଣି ନାହାନ୍ତି । ନିଜର କାର୍ଯ୍ୟ ନେଇ ବ୍ୟସ୍ତ । ଆଗନ୍ତୁକ ଦୁଆର ପାଖରେ ଠିଆ ହୋଇ କହିଲା—ନମ୍ବର ଇଲେଭେନ୍···

କୋଡ୍ ।

ଟାଇଗର···

ଭେରିଗୁଡ୍ । ତୁମେ ପ୍ରସ୍ତୁତ ହୋଇ ଆସିଛ ।

ଇୟେସ ସାର୍ !—

ଚେୟାରରେ ଯିଏ ବସିଛି ତାଙ୍କୁ ଦେଖିପାରୁଛ ।

ଟାଇଗର ଘର ଭିତରେ ଦୃଷ୍ଟି ବୁଲାଇ ନେଇ କହିଲା—ଦେଖୁଛି, କମ୍ରେଡ୍···

ଚିହ୍ନି କି ?

ମୁଁ ଚିହ୍ନି ପାରୁନାହିଁ, କମରେଡ୍ । ପରିଷ୍କାର ଭାବେ ମୁହଁଟା ଦେଖା ଯାଉନାହିଁ···

ହାତପାଖରେ ଥିବା ଯନ୍ତ୍ରାଧାର ଉପରେ ଚାପଦେଲେ କମ୍ରେଡ୍ । ଖୁଟ୍ ଶବ୍ଦଟିଏ ହେବାମାତ୍ରେ ଉଜ୍ଜଳ ଆଲୋକରେ ଘରଟା ଝଲମଲ ହୋଇ ଉଠିଲା । ଟାଇଗର ପୁଣ୍ଣି ଦୃଷ୍ଟିରେ ଦେଖିନେଲା ଚେୟାରରେ ଉପବିଷ୍ଟ ଲୋକଟାକୁ । ବିଦ୍ରୂପ ସ୍ୱର ପଡ଼ିଲା କଣ୍ଠରୁ—ନମ୍ବର ସେଭେନ୍ ।

ରାଇଟ୍ ।

ଆଲୁଅଟା ଲିଭିଗଲା ।

ଫେଭେନ୍‌ର ପାଖରେ ଯାଇ ଠିଆହୁଅ ଗମ୍ଭୀର କଣ୍ଠସ୍ୱର କମରେଡ୍‌ର ।

ଧୀରେ ଧୀରେ ଆଗେଇ ଆସିଲା ଇଲେଭେନ୍ । କମରେଡ୍ କହିଲା—ପକେଟରୁ ସେଇଟା ବାହାର କରି ତାକୁ ଦେଖାଅ—କୁଇକ୍—ହାତ ତୁମର ଥରୁଛି କାହିଁକି, ଟାଇଗର !

ପକେଟରେ ହାତ ଭର୍ତ୍ତି କରି ଖଣ୍ଡିଏ ଗ୍ରେଟ ପିସ୍ତଲ ବାହାର କଲା ଇଲେଭେନ୍ ।

ଜୁପିଟର ! ଜିନିଷଟା ଦେଖି ପାରୁଛ ?

ସାର୍—

ବିଶ୍ୱାସଘାତକତାର ଶାସ୍ତି କଣ, ଏ ଦଳଭୁକ୍ତ ହେବା ଆଗରୁ ତୁମକୁ ଶୁଣାଇ ଦିଆ ହୋଇଛି । ତୁମେ ମଧ୍ୟ ଶପଥ ପାଠ କରି ଦଳଭୁକ୍ତ ହୋଇଥିଲ । ଲୁଚାଇବାକୁ ଚେଷ୍ଟା କରନା, ଶାସ୍ତି ପାଇଁ ପ୍ରସ୍ତୁତ ହୁଅ । ଟାଇଗର କେବଳ ଗୋଟିଏ ବୁଲେଟ୍ ବ୍ୟବହାର କରିବ । ସେ ଶବ୍ଦ କାହାରି କାନରେ ପହଞ୍ଚିବ ନାହିଁ । କେହି ତୁମର ମୃତ ଶରୀରର ସନ୍ଧାନ ପାଇବେ ନାହିଁ । ତୁମେ ଯେଉଁ ଚେୟାରଟିରେ ବସିଛ ତାର ତଳେ ଗୋଟିଏ ସୁଡ଼ଙ୍ଗ ଅଛି । ଫାୟାରିଂ ପରେ ମୁଁ ନିଜେ ପରୀକ୍ଷା କରି ଦେଖିବି ତୁମେ ପରପାରିକୁ ଯାଇଛ କି ନା । ତାପରେ ଏପରି ଗୋଟିଏ ଯନ୍ତ୍ର ଟିପିବି ତଳଟା ଖାଲି ହୋଇଯିବ ଓ ତୁମେ ଚେୟାରସହ ଖସି ପଡ଼ିବ । ତୁମର ମୃତ ଦେହ ଖସିଯିବ ସ୍ରୋତସ୍ୱିନୀ ଗଙ୍ଗା ବକ୍ଷରେ । ଗଙ୍ଗା ପାଣି ସ୍ପର୍ଶରେ ତୁମ ସମସ୍ତ ପାପ ଅନ୍ୟାୟ ବିଧୌତ ହୋଇ ଯିବ, ଅବଶ୍ୟ ଯଦି ଗଙ୍ଗା ଦେବୀଙ୍କ ସମ୍ବନ୍ଧରେ ତୁମର କିଛି ଆଇଡ଼ିଆ ଥାଏ । ନାଓ ରେଡ଼ି···

ନୋ, କମରେଡ୍—ଜୁପିଟର୍ ଆତଙ୍କଭରା କଣ୍ଠରେ କହିଲା ।

ସଟ୍‌ଅପ ! ତୁମେ ଭୁଲି ଯାଉଛ ଜୁପିଟର, ତୁମେ ଜଣେ ରାଜ୍‌ଏଟ୍ । ସ୍ୱଦେଶ ପାଇଁ ଶହେଟା ଜାଗାରେ ଦରଖାସ୍ତ କରି, ସବୁଠି ନିରାଶ ହୋଇ ରେଜ୍‌ଯା ଟାଣୁଥିଲ । ତୁମର ସୌଭାଗ୍ୟ ଯେ ସେଦିନ ରାତିରେ ମୁଁ ତୁମର

ପାସେଞ୍ଜର ହୋଇଥିଲ । ଷ୍ଟେସନକୁ ନେବା ବାଟରେ କଥା ପଡ଼ୁ ପଡ଼ୁ ତୁମେ ବେକାର ଜୀବନର କାହାଣୀ ଶୁଣାଇଥିଲ । ତୁମର କଥା ଶୁଣି କରୁଣା ଦାନ କରିଥିଲି ତୁମକୁ । ଘରକୁ ଆଣି ଆଶ୍ରୟ ଦେଇଥିଲି । ତୁମେ ଧୀରେ ଧୀରେ ମୋର ବିଶ୍ୱାସଭାଜନ ହୋଇଥିଲ । ମୋର ଯେତେ ଗୁପ୍ତ ତଥ୍ୟ, ଗୁପ୍ତ ଆବିଷ୍କାର ସମସ୍ତ ଦେଖିବାର ସୁଯୋଗ ଦେଇଥିଲି ତୁମକୁ । କିନ୍ତୁ ତୁମେ କଣ କଲ ?

କମରେଡ଼ ଚେୟାରରୁ ଉଠିଆସି ହାତ ଦୁଇଟିକୁ ପଛଆଡ଼େ ମୁଷ୍ଟିବଦ୍ଧ କରି ଅସ୍ଥିରଭାବେ ପଦଚାରଣ କରିବାକୁ ଲାଗିଲା । ଏକ ସମୟରେ ନମ୍ବର ସେଭେନର ସମ୍ମୁଖରେ ଠିଆହୋଇ ସାପପରି ହସ୍ ହସ୍ ଶବ୍ଦ କରି କହିଲା—ମୋର ଏହି ବୈଜ୍ଞାନିକ ଆବିଷ୍କାର ସମ୍ବନ୍ଧରେ ବାହାର ଲୋକ ଜାଣିଲେ କିପରି ? ତୁମେ ଆଜିକାଲି ଯେଉଁ ବନ୍ଧୁଟିକୁ ନେଇ ସାଙ୍ଗରେ ବୁଲୁଛ ସେ କିଏ ଜାଣ ? ପୁଲିସର ଗୁପ୍ତଚର । ତୁମେ ତାକୁ ଦିନେ ଆମର ଗୁପ୍ତ ଆଡ଼ତାରେ ଆଣି ସଭ୍ୟଭୁକ୍ତ କରାଇବ ବୋଲି ପ୍ରତିଶ୍ରୁତି ଦେଇଛ ।

ମୋତେ କ୍ଷମା କରନ୍ତୁ, ସାର୍…

କ୍ଷମା ! ବିଶ୍ୱାସଘାତକ, ବେଇମାନ…ନରହରିବାବୁଙ୍କ ସହିତ ଯେତେବେଳେ ମୋର ପ୍ରବଳ ବଂଶୀକୁ ନେଇ କିଏ ଯେତେବେଳେ ଆମର ଆଭ୍ୟନ୍ତରୀଣ ବ୍ୟାପାରଗୁଡ଼ିକ ବାହାରେ ପ୍ରକାଶ କରିଥିଲ ? ତୁମେ—ଇଭିଲ୍ ଜୁପିଟର ନମ୍ବର ସେଭେନ୍ ! ସେତେବେଳେ ତୁମ କଥା ବିଚାର କରିବାର ଅବସର ନଥିଲା, ସେଥିପାଇଁ ଆଜିଯାଏ ତୁମେ ପୃଥିବୀର ଆଲୋକ ପବନ ଅନୁଭବ କରି ଆସୁଛ । ଇଡ଼ିୟଟ୍, ତୁମେ ଗୋଟାଏ ମସ୍ତବଡ଼ ଇଡ଼ିୟଟ୍ । ଜାଣିଶୁଣି ନିଜର ବିପଦକୁ ଯିଏ ସ୍ୱାଗତ କରେ ତା'ଠାରୁ ବଳି ମୂର୍ଖ ଆଉ କିଏ ଅଛି । ଦଳର କର୍ମୀମାନଙ୍କର ନାମ କେହି କାହାରିକୁ ଜାଣିବେ ନାହିଁ, ଏହା ହେଉଛି ନିୟମ—ଏକମାତ୍ର ଜାଣିବି ମୁଁ ଏବଂ ଜାଣିଛି । ତଥାପି ନିୟମମାନ ନମ୍ବର ଇଲେଭେନ୍ ଏଠାରେ ଅଛି ବୋଲି

ତୁମର ନାମ ପ୍ରକାଶ କରି ପାରୁନାହିଁ । କୁହ, ମୁଁ ତୁମର ନାମ ଜାଣେ କି ନା ?

ହଁ, ସାର୍ । ଆପଣଙ୍କୁ ମୁଁ ପ୍ରଥମ ଦିନ କହିଛୁ···ନମ୍ବର ସେଭେନ୍‌ର କଣ୍ଠସ୍ୱର ଆତୁର ଦୁର୍ବଳ ହୋଇ ପଡ଼ିଛୁ ବୋଲି ଜଣାଗଲା ।

କମରେଡ୍ ଅଦ୍ଭୁତ ହସ ହସିଲେ । ନିସ୍ତବ୍ଧ, ମୃତପରି ଶୀତଳ ଘରଟିରେ ସେହି ହସ ପିଶାଚର ହସ ପରି ଶବ୍ଦାୟିତ ହୋଇ ଉଠିଲା । ଜୁପିଟର ଓ ଟାଇଗର ଉଭୟେ ଚମକି ପଡ଼ିଲେ ସେହି ଶବ୍ଦରେ । ହସ ବନ୍ଦକରି କମରେଡ୍ କହିଲା—ତାହାହେଲେ ମନେ ଅଛି ? ନାଇସ—ଟାଇଗରେ । ଓ୍ୱାନ—

ଓ୍ୱାନ ଶୁଣିବାମାତ୍ରେ ଟାଇଗର ପିସ୍ତଲଟିକୁ ଜୁପିଟରର ମୁଣ୍ଡ ପାଖକୁ ନେଇ ଆସି ଅନ୍ୟ ଦୁଇଟି ସଂଖ୍ୟା ଶୁଣିବା ଲାଗି ପ୍ରସ୍ତୁତ ହେଲା । କମରେଡ୍ 'ଟୁ' କହିବାକୁ ଯାଉଛନ୍ତି ଠିକ୍ ସେଇ ସମୟରେ ପୂର୍ବପରି ଯାନ୍ତ୍ରିକ ଶବ୍ଦ ଶୁଣାଗଲା, ଯନ୍ତ୍ର ପାଖକୁ ଆସି ଟେବୁଲ୍ ଉପରୁ ରସିଭରଟିକୁ ଉଠାଇ ନେଇ କହିଲେ—ସ୍ପିକିଂ ।

ଅପରପକ୍ଷରୁ ଶୁଣାଗଲା—ନମ୍ବର ଟ୍ୱେଣ୍ଟି ଫେରଛୁ—

ସାତମିନିଟ୍ ପରେ ପଠାଇ ଦିଅ—

ରସିଭରଟିକୁ ଯଥା ସ୍ଥାନରେ ରଖି ଦେଇ ପୁଣି ଆସି ଠିଆ ହେଲା ନମ୍ବର ସେଭେନ୍ ଓ ନମ୍ବର ଇଲେଭେନର ସମ୍ମୁଖରେ । ନାଓ ରେଡ଼ି, ଟାଇଗର—ଓ୍ୱାନ୍—ଟୁ—ଥ୍ରୀ—

ହସ୍ କରି ଶବ୍ଦ ଉଦ୍ଧିତ ହେବା ସଙ୍ଗେ ସଙ୍ଗେ ଝଲକାଏ ଅଗ୍ନିଶିଖା ପିସ୍ତଲର ନଳରୁ ବାହାରି ଆସିଲା । ସୁଇଚ୍‌ବୋର୍ଡ଼ ପାଖକୁ ଆସି କମରେଡ ଗୋଟିଏ ସୁଇଚ୍‌ରେ ଚାପ ଦେବାମାତ୍ରେ ଏକ ବିରାଟ ଗହ୍ୱର ସୃଷ୍ଟି ହେଲା । ସଙ୍ଗେ ସଙ୍ଗେ ଅଦୃଶ୍ୟ ହୋଇଗଲେ । ଆଉ ଚେୟାର ଖଣ୍ଡି ସହିତ ନମ୍ବର ସେଭେନ୍‌ର ବିରାଟ ବପୁଟି ଅଦୃଶ୍ୟ ହୋଇଗଲେ । ଆଉ ଗୋଟିଏ ସୁଇଚ୍‌ରେ ଚାପ ପଡ଼ିବାମାତ୍ରେ କେଉଁ ଏକ ଅଦୃଶ୍ୟ ସ୍ଥାନରୁ ଭୁସ୍ ଭୁସ୍ ହୋଇ ଜଳ ଆସି ପଡ଼ିଲା । ପାଞ୍ଚମିନିଟ୍ ଭିତରେ ପୁଣି ସବୁ ସ୍ଥିର । ଉଜ୍ଜ୍ୱଳ ଆଲୋକଟା

ଜଳି ଉଠିଲା । ନମ୍ବର ଇଲେଭନ୍‌ର ପିସ୍ତଲଟା ରେମ ଯାଇନ ଯେତେବେଳ ପର୍ଯ୍ୟନ୍ତ । ସେ ବୁଝିପାରିଲା ନମ୍ବର ସେଭେନ୍ ବର୍ତ୍ତମାନ କେଉଁଠାରେ ।

ଏଇଟା ତାର ତୃତୀୟ ପରୀକ୍ଷା ।

ଗୋ ଅହେଡ୍—

ଆଦେଶ ପାଇ ଇଲେଭେନ୍ କକ୍ଷତ୍ୟାଗ କରି ବାହାରକୁ ଚାଲି-ଆସିଲା । ହାତଘଡ଼ି ଦେଖିଲା କମ୍‌ରେଡ । ଆଲୋକଗୁଡ଼ିକ ଲିଭିଯାଇ ପୁଣି ଅନ୍ଧକାରର ରାଜତ୍ୱ ଆସିଲା । କମ୍‌ରେଡ଼ ଫେରି ଆସିଲା ନିଜର ପରିତ୍ୟକ୍ତ ଆସନକୁ ।

ବସିବା ସଙ୍ଗେ ସଙ୍ଗେ ଦ୍ୱାର ଖୋଲାର ଶବ୍ଦ ଶୁଭିଲା ।

କମ୍ ଇନ୍—

ଆଗନ୍ତୁକ ଟିକିଏ ଦୂରେଇ ଠିଆ ହେଲା ।

କୋଡ୍ ?—

ହିଟଲର—

କଣ ଟିକିଏ ଭାବିଲା କମରେଡ଼ । ଲଲାଟ କୁଞ୍ଚିତ ହେଲା । ତାହା ମୂହୂର୍ତ୍ତେ ମାତ୍ର । ପରମୂହୂର୍ତ୍ତରେ କହିଲା—ଓ, ଇୟେସ···ମନେ ପଡ଼ୁଛି । ସାମନାକୁ ଆସ···

ଆଉ ଟିକିଏ ଆଗେଇ ଆସିଲା ହିଟଲର—ନମ୍ବର ଟୁଏଣ୍ଟି ।

ଖବର କଣ ?

ଅନେକ ଦୂର ଆଗେଇଛୁ, ସାର୍ ।

ମୁଁ ଜାଣେ ତୁମେ ପାରିବ ? କେବେ ସୁଦ୍ଧା ସମ୍ଭବ ?

ଆଉ ଏକ ସପ୍ତାହ ଭିତରେ ସବୁ ଠିକ୍ ହୋଇଯିବ ।

ଆଉରି କିଛି ?—ଉତ୍ସାହ ଭରା କଣ୍ଠସ୍ୱର କମ୍‌ରେଡ଼ର । ଟଙ୍କା ଦରକାର ?

ନମ୍ବର ଟ୍ୱେଣ୍ଟି ମୁଣ୍ଡ ତଳକୁ କରି ଛିଡ଼ା ହେଲା ।

କମରେଡ଼ ସ୍ଲିପ୍‌ରେ ଖସ୍ ଖସ୍ କରି କଣ ଲେଖି ନମ୍ବର ଟ୍ୱେଣ୍ଟିର ହାତକୁ ବଢ଼ାଇ ଦେଇ କହିଲେ—ନମ୍ବର ନାଇନ୍ ପାଖକୁ ନେଇଯାଅ, ସେ ସମସ୍ତ ବନ୍ଦୋବସ୍ତ କରି ଦେବେ···

ଯିବାବେଳେ ନମ୍ବର ଟ୍ୱେଣ୍ଟି ନମସ୍କାର କରିଗଲା କି ନାହିଁ ଅନ୍ଧକାରରେ ଦେଖାଗଲା ନାହିଁ । ଦୁଆର ବନ୍ଦ ହେବା ଶବ୍ଦ ଶୁଣାଯିବା ପରେ କମ୍‌ରେଡ଼ ଚେୟାରରୁ ଉଠି କାନ୍ଥ ଆଲମାରି ପାଖରେ ଛିଡ଼ା ହୋଇ ପକେଟରୁ ଚାବିଗୋଛା ବାହାର କଲା । ଆଲମାରି ଖୋଲି ଭିତରୁ ବାହାର କଲା କୃଷ୍ଣବର୍ଣ୍ଣ ପରିଚ୍ଛଦର ଗୋଟିଏ ସେଟ୍ ।

ଆଲମାରି ବନ୍ଦକରି କ୍ଷିପ୍ର ହାତରେ କୃଷ୍ଣବର୍ଣ୍ଣ ପୋଷାକଟାକୁ ପିନ୍ଧି ନେଲା । ପରିତ୍ୟକ୍ତ ଜାଗାରୁ କେତୋଟି ଯନ୍ତ୍ର ଆକାରର ବସ୍ତୁ ବାହାର କରି ପରୀକ୍ଷା କରି ପୋଷାକର ପକେଟ୍‌ରେ ରଖି ଘରର ସମସ୍ତ ଆଲୋକ ଲିଭାଇ ବାହାରକୁ ଆସିଲା । ଦୁଆର ବନ୍ଦକରି କିଛିଦୂର ଆସିବା ପରେ ଦେଖାଗଲା ଗୋଟିଏ ଉଦ୍ୟାନ । ଉଦ୍ୟାନର ମଝିରେ ଗୋଟିଏ ଗ୍ଲେଟଘର । ପକେଟରୁ ଚାବି ବାହାର କରି ଘରଟି ଖୋଲିଲା । ଭିତରେ ପ୍ରବେଶ କଲା କମରେଡ଼ । କିନ୍ତୁ ବାହାରକୁ ଯେତେବେଳେ ବାହାରିଲା, ସେ ଏକାକୀ ନୁହେଁ—ଅନୁରୂପ ପୋଷାକ ପିନ୍ଧି ଆଉ ଜଣେ ସାଙ୍ଗରେ ଆସିଲା ବାହାରକୁ । ଦୁଆର ବନ୍ଦକରି ଉଭୟେ ଠିଆ ହେଲେ ସେଠାରେ । କାହାକୁ ଯେପରି ଅପେକ୍ଷା କରୁଛନ୍ତି ।

ବେଶି ସମୟ ଅପେକ୍ଷା କରିବାକୁ ହେଲା ନାହିଁ । ମଟର ବାଇକ୍‌ର ଶବ୍ଦ ଶୁଣାଗଲା । ବାଇକ୍‌ର ହେଡ଼ଲାଇଟ୍ ମଧ୍ୟ ଦେଖାଗଲା । ମଟର ବାଇକ୍‌ର ଚାଳକ ସେମାନଙ୍କର ସମ୍ମୁଖରେ ବାଇକ୍‌ଟିକୁ ବ୍ରେକ୍ କରି ଓହ୍ଲାଇ ପଡ଼ିବା ମାତ୍ରେ କମରେଡ଼ ବାଇକ୍‌ଟିରେ ବସି ପଡ଼ିଲେ । କମରେଡ଼ର ସଙ୍ଗୀ ଜଣକ ପଛରେ ବସିବା ପରେ ମଟର ବାଇକ୍‌ର ଇଞ୍ଜିନ ପୁଣି ଗର୍ଜନ କରି ଉଠିଲା ।

ପରମୁହୂର୍ତ୍ତରେ ଅଦୃଶ୍ୟ ହୋଇଗଲା ବାଇକ୍‌ଖଣ୍ଡିକ ।

ଯେଉଁ ବ୍ୟକ୍ତିଟି ବାଇକ୍‌ଟିକୁ ନେଇ ଆସିଥିଲା ସେ ପଦବ୍ରଜରେ ଫେରିଲା ଯେଉଁଆଡ଼ୁ ଆସିଥିଲା ସେହି ଦିଗକୁ ।

ଊର୍ମିଳାକୁ ବୋଧହୁଏ ଭୋକ କରୁଥିଲା ଖୁବ୍ । କହିଲା ଚାଲ, ଲଳିତା—ଖାଇ ଆସିବା ।

କିନ୍ତୁ ତୋର ଏ ଗଳ୍ପଟା ?

ଖାଇ ଆସି କହିବି···

ଉଭୟେ ଖାଇବାକୁ ଗଲେ । ସମସ୍ତେ କ୍ଲାସକୁ ଯାଇଛନ୍ତି । ଏମାନେ ଦୁହେଁ ଖିଆପିଆ ଶେଷକରି ପୁଣି ନିଜ ରୁମକୁ ଫେରି ଆସିଲେ । ଊର୍ମିଳାର ଶଯ୍ୟାରେ, ଲଳିତା ପାଖରେ ଶୋଇଲା ।

ତା'ପରେ କଣ ହେଲା କହ—ପଚାରିଲା ଲଳିତା ।

ଶୁଣ, ଲଳିତା ! ସବିତାକୁ ନେଇ ପ୍ରବୋଧ ଦାସ ରାତି ରାତି କଟାଇ ଦେଲେ ଶଯ୍ୟା ପାଖରେ ଶୁଆଇ । ମନର ଅଭ୍ୟାସ, କ୍ରମେ ଅତି ତୀବ୍ର ହୋଇ ଉଠିଲା ସବିତାର । ଯୌନକ୍ଷୁଧା ବଢ଼ିବାକୁ ଲାଗିଲା ସେହି ପରିମାଣରେ । ତୃପ୍ତ ହୁଅନ୍ତି ପ୍ରବୋଧ ଦାସ ସବିତାର ଯୌବନ-ସୁଧା ପାନକରି ।

କ୍ଷୁଧା—କ୍ଷୁଧା—ଏ କ୍ଷୁଧା ଯେପରି ନିବାରଣ ହେବାର ନୁହେଁ ଦୁହିଁଙ୍କର । ରାତି ତ' ରାତି—ଦିନ ମଧ୍ୟ ସେମାନଙ୍କର ଯୌନ କ୍ଷୁଧାର ଏକ ଅଙ୍ଗ ହୋଇ ରହିଲା ।

ଦୁଇମାସ ପାଇଁ ଆସିଥିଲା ସବିତା । ପ୍ରଥମେ ପ୍ରଥମେ ସେନେ ଦୁଇଦିନ ଅନ୍ତରରେ ଅଜୟ ପାଖକୁ ଚିଠି ଦେଉଥିଲା. ଚିଠି ମଧ୍ୟ ପାଉଥିଲା ଠିକ୍ ସମୟରେ । ଏଣିକି ଆଉ ଚିଠି ଲେଖିବାକୁ ଇଚ୍ଛା ହୁଏନା । ଅବସର ମଧ୍ୟ କାହିଁ । ବିଚରା ଅଜୟ ସାମନ୍ତ ପତ୍ରର ଉତ୍ତର ନପାଇ ହା-ହୁତାଶ ହେଉଥାଏ । ପୁରୁଷର ମନ—କେତେ ପ୍ରକାର ସନ୍ଦେହ ମନରେ ଉଦୟ ହୁଏ । ସହକର୍ମୀମାନେ ପରସ୍ପର ମଧ୍ୟରେ କୁହା କୁହି ହୁଅନ୍ତି । କେହି ଅଜୟ ଆଗରେ କିଛି ନକହିଲେ ସୁଦ୍ଧା ଅଜୟ ବୁଝିପାରେ ସମସ୍ତେ ଯେପରି ତାର ମନକଥା ଜାଣି ପାରିଛନ୍ତି । ଜାଣି ପାରିଛନ୍ତି ସବିତା ତାର ଏକା ନୁହେଁ, ଅନ୍ୟ ଜଣକର ଅଂଶ ଅଛି ।

ଥରେ ଥରେ ଚିଠି ଆସେ, ସବୁତା ନଖୋଲି ସେଇପରି ରଖିଦିଏ । ଚିଠି ପ୍ରତି ତାର ସେପରି ଆଗ୍ରହ ନାହିଁ । ଦୁଇମାସ ଭିତରେ ସେ ପାଇଛି ପ୍ରାୟ ଦଶବାରଖଣ୍ଡ ଚିଠି, ଦେଇଛି ମାତ୍ର ଚାରିଖଣ୍ଡ । ତାହା ମଧ୍ୟ ଅଜୟ ଯେଉଁ ଚିଠି ଦେଇଥିଲା ତାର ପ୍ରତ୍ୟୁତ୍ତର ନୁହେଁ । ସାଧାରଣ ଚିଠି । ଯହିଁରୁ ମନେହୁଏ ସ୍ତ୍ରୀ ଚିଠି ଲେଖିଛି ସ୍ୱାମୀ ପାଖକୁ ବୋଲି ।

ଦିନେ ଅଫିସକୁ ଚିଠି ଆସିଲା, ପ୍ରବୋଧ ଦାସ ଶନିବାର ରାତିରେ ଫେରୁଛନ୍ତି । ରବିବାର ଦିନ ଦୁଇଟାରେ ତାଙ୍କର କାର୍ ସେଠାର ଷ୍ଟେସନକୁ ଆସେ ।

ଖବରଟି ଅଜୟ ମଧ୍ୟ ପାଇଲା ।

ଷ୍ଟୋର ବାବୁ ହସି ହସି ପାଖରେ ଆସି ବସିଲେ । ଏଣୁ ତେଣୁ କଥା ପକାଇ ଶେଷରେ କହିଲେ—ଦୁଃଖରାତି ପାହିଲା ଭାଇ, ସୁଖର ରାତି ଆସୁଛି—

କିଛି ବୁଝି ପାରିଲା ନାହିଁ ଅଜୟ । ବଲ୍ ବଲ୍ ହୋଇ ଚାହିଁଲା ଷ୍ଟୋରବାବୁଙ୍କ ଆଡ଼କୁ ।

ଷ୍ଟୋରବାବୁଙ୍କ ହସଟା ଟିକିଏ କୁତ୍ସିତ ଧରଣର ହେଲା ଏଥର । କହିଲେ—ରବିବାର ଦିନ ସାହେବ ଫେରୁଛନ୍ତି । ଏଥର ବୋଧହୁଏ ଆପଣ ଦୁହେଁ ଲିଫ୍ଟ୍ ପାଇବେ କିମ୍ବା ଭଲ ଇନ୍କ୍ରିମେଣ୍ଟ ପାଇବେ ।

ରବିବାର ଦିନ ସାହେବ ଆସୁଛନ୍ତି, ତାହେଲେ ଦେବତା ବି ଫେରୁଛି; ଅଜୟ ମନଟା ପ୍ରଫୁଲ୍ଲ ହୋଇ ଉଠିଲା । ଓଃ କେତେଦିନ ପରେ ପୁଣି ମିଳନ । ପଦୋନ୍ନତି କିମ୍ବା ଇନ୍କ୍ରିମେଣ୍ଟ—ହୁଏତ ହେବାର କିଛି ଆଶ୍ଚର୍ଯ୍ୟ ନୁହେଁ । ବଡ଼ ବଡ଼ କର୍ମଚାରୀମାନଙ୍କ ମୁହଁରୁ ଯେତେବେଳେ ଶୁଣାଯାଉଛି ନିଶ୍ଚୟ ସତ୍ୟତା ଅଛି କଥାରେ ।

ଅଫିସରୁ ଟିକିଏ ଚଞ୍ଚଳ ଫେରିଲା ଅଜୟ । ମନଟା ଅତି ପ୍ରଫୁଲ୍ଲ ଖବରଟା ପାଇବାବେଳୁ । ଆଜି ଟିକିଏ ସିନେମା ଦେଖିଲେ କିପରି ହୁଅନ୍ତା ? ଫେରିଲାବେଳେ ଗୋଟାଏ ଭଲ ହୋଟେଲରୁ ଖାଇ ଆସିଲେ ଚଳିବ ।

ସିନେମାର ଗଳ୍ପଟି ସେଦିନ ଖୁବ୍ ଭଲ ଲାଗିଥିଲା ଅଜୟଙ୍କୁ । ଅବିକଳ ତାର ବର୍ତ୍ତମାନ ସାଂସାରିକ ଜୀବନର କାର୍ବନ୍ କପି ଯେପରି ଏହି ଗଳ୍ପଟି । ଲେଖକ ପ୍ରତି ଗଭୀର ଶ୍ରଦ୍ଧା ମନରେ ଉଦୟ ହେଲା । ଜୀବନ ଜିଜ୍ଞାସା ସମ୍ବନ୍ଧରେ ସେମାନଙ୍କର କେତେଦୂର ଦୂରଦର୍ଶିତା । ମାତ୍ର ପ୍ରଭେଦ ଏତିକି, ତାର ସ୍ତ୍ରୀ କାର୍ଯ୍ୟୋପଲକ୍ଷେରେ ସ୍ୱାମୀଙ୍କ ପାଖରୁ ଦୂରରେ, ମାତ୍ର ଚିତ୍ରର ନାୟକର ସ୍ତ୍ରୀ ପିତ୍ରାଳୟରେ ଦୀର୍ଘ ଦିନ ଅବସ୍ଥାନ ହେତୁ ପାରିବାରିକ ଅସନ୍ତୁଷ୍ଟିକୁ କେନ୍ଦ୍ର କରି ବିଚ୍ଛେଦ । ଶେଷରେ ନାୟକ ଯେତେବେଳେ ନିଜର ଭୁଲ୍ ବୁଝିପାରିଲା ବିଚ୍ଛେଦ ଯନ୍ତ୍ରଣାର ଅବସାଦ ଲାଗି ଦଉଡ଼ିଲା ସ୍ତ୍ରୀ ପାଖକୁ । ସ୍ତ୍ରୀ ବି କମ୍ ଯନ୍ତ୍ରଣା ସହ୍ୟ କରିଛି ସ୍ୱାମୀର ଅଦର୍ଶନ ଯୋଗୁଁ । ଶେଷରେ ପିତାମାତାର ନିଷେଧକୁ ଅବଜ୍ଞା କରି ଝଡ଼ ବୃଷ୍ଟି ମୁଣ୍ଡରେ ନେଇ ଆସିଲା ସ୍ୱାମୀ ପାଖକୁ ।

କି ଆନନ୍ଦ ସ୍ୱାମୀର । ଉଭୟଙ୍କର ଆନନ୍ଦାଶ୍ରୁରେ ବୁକୁ ଦୁଇଟି ଭିଜିଗଲେ । ଏହି ଅପୂର୍ବ ଓ ରୋମାଞ୍ଚପୂର୍ଣ୍ଣ ମିଳନ ସିନେମାର ଦର୍ଶକଗଣଙ୍କୁ ଏପରି ମୁଗ୍ଧ କରିଥିଲା ଯେ ଚିତ୍ରଟିର ଗଳ୍ପ ସମ୍ବନ୍ଧରେ ଆଲୋଚନା କରୁ କରୁ ସମସ୍ତେ ଗୃହାଭିମୁଖୀ ହେଲେ ।

ଶିକ୍ଷାପ୍ରଦ ଅପୂର୍ବ ସୃଷ୍ଟି ଲେଖକର ହୃଦ୍ର ନାୟିକାର ଆଶ୍ଚର୍ଯ୍ୟ ସ୍ୱାମୀଭକ୍ତି ।

ଗଳ୍ପଟିର କଥା ଆଲୋଚନା ମନେ ମନେ କରୁ କରୁ ଅଜୟ କୋଉଟିଏ ହୋଟେଲରେ ଆସି ଆହାରାଦି ଶେଷକରି ଘରକୁ ଫେରିଲା । ଏଥର ଶୋଇ ଶୋଇ ସେ ଚିନ୍ତା କରିବ ସବିତାକୁ । ତାର ହୃଦୟର ରାଣୀ ସବିତା ତାର ପ୍ରେୟସୀ ସବିତା ।

ସେମାନଙ୍କ ବିବାହ ପରେ ଷ୍ଟୁଡ଼ିଓରେ ଖଣ୍ଡିଏ ଫଟୋ ଉଠାଇଲେ । ବଧୂବେଶୀ ସବିତା ଯେପରି ଇନ୍ଦ୍ରାଣୀର ରୂପ ନେଇ ବସିଛି ତା' ପାଖରେ । ଟ୍ରୟ ନଗରୀର ହେଲେନ୍ ବୋଧହୁଏ ଏପରି ରୂପର ଅଧିକାରିଣୀ ନଥିଲା ।

କାନ୍ଥରୁ ଫଟୋଟିକୁ ଆଣି ଟେବୁଲ ଉପରେ ରଖିଲା ଅଜୟ । ମଝିରେ କାଲି ଦିନଟା, ପଅରଦିନ ଆସିବ ସବିତା । ଦୋକାନ ବଜାରରୁ

ରଜନୀଗନ୍ଧା ଇଣିଆଣି ଷ୍ଟିକ୍‌ଗୁଡ଼ିକ ଏପରି ଭାବେ ସଜାଇବ ଯେ, ଯେପରି ଖାଲି ମୁହଁଟି ଦେଖା ଯାଉଥିବ ଫୁଲ ଓ ଷ୍ଟିକ୍‌ଗୁଡ଼ିକର ଅନ୍ତରାଳରୁ ।

ଆଗେ ସେ କଣ କହିବ ସବିତାକୁ···

ସବିତା ନିଶ୍ଚୟ ଘୋଡ଼ାରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ନଇଁପଡ଼ି ତାର ଗୋଡ଼ଧୂଳି ନେଇ ମୁଣ୍ଡରେ ମାରିବ । ସେ ତାକୁ ତଳୁ ଉଠାଇ ନେବ ସବିତାର ସୁକୋମଳ ବାହୁ ଦୁଇଟିକୁ ଧରି । ଛେନାପୋଡ଼ ଖାଇବାକୁ ଖୁବ୍ ଭଲପାଏ ସବିତା । ଅଧିକଲେ ଆଣି ରଖିଥିବ ।

ତାପରେ ସବିତା ଦାର୍ଜିଲିଂର କଥା କହିବ । ସେଠାକାର କେତେ ଦୃଶ୍ୟ ସେ ଦେଖି ଆସିଥିବ । ତାପରେ ରାତିରେ—

ରାତିଟା ଠିକ୍ ମନେ ହେବ ମଧୁଶଯ୍ୟା ରାତିପରି ।

ଅନେକ ରାତିରେ ନିଦ ଆସିଲା । ପରଦିନ ଶନିବାର । ଅଫିସରେ ମନଟା ଚଞ୍ଚଳ ହେଲା । ଷ୍ଟୋରବାବୁ ଅଭୟବାବୁ. ଏମାନେ ଆସି ବସିଲେ ପାଖରେ । ଖଣ୍ଡିଏ ସିଗାରେଟ୍ ଅଫର୍ କଲେ ଷ୍ଟୋର ବାବୁ । ସିଗାରେଟ୍ ଖାଏନା ଅଜୟ । ଆଜି କିନ୍ତୁ ଖାଇବାକୁ ଇଚ୍ଛା ହେଲା । ଅଭୟ ବାବୁ ଚାଲିଲେ, ଷ୍ଟୋରବାବୁ ହସି ହସି କହିଲେ—ଆପଣଙ୍କୁ ଟିକିଏ କଷ୍ଟ ଦେବି ଅଜୟବାବୁ !

କଷ୍ଟ ! କାହିଁକି ?

ନା-ନା, ଭୟ କରନ୍ତୁ ନାହିଁ । ମୋ ପାଇଁ ଟିକିଏ କଷ୍ଟ ସ୍ୱୀକାର କରିବାକୁ କୁଣ୍ଠିତ ହେବେ ନାହିଁ, ଏଇକଥା କହୁଛି ।

କହନ୍ତୁ···କଣ କରିବାକୁ ହେବ···

ନିରଞ୍ଜନ ବାବୁ ରିଟାୟାର୍ଡ଼ କରିବେ, ଆପଣ ଜାଣନ୍ତି ?

ହଁ ଜାଣେ ।

ଆପଣ ଯଦି ସାହେବଙ୍କୁ ମୋ କଥା କହନ୍ତେ···

ସାହେବ କଣ ମୋ କଥା ରଖିବେ ?

କଣ କହୁଛନ୍ତି ଆପଣ ? ସାହେବ ଓ ଆପଣଙ୍କର ତ' ଖାଲି ଅଫିସ କାମ ନେଇ ସମ୍ବନ୍ଧ ନାହିଁ, ଆପଣ ବୁହେଁ ତାଙ୍କର ପାରିବାରିକ ଘଟଣା ସହିତ ଜଡ଼ିତ ହୋଇ ପଡ଼ିଛନ୍ତି । ଆପଣ ମୋ ପାଇଁ ପଦେ ଉଚ୍ଚାରଣ କଲେ ଯଥେଷ୍ଟ ।

କଣ ଟିକିଏ ଭାବିଲା ଅଜୟ । କହିଲା—ଆଚ୍ଛା ସାହେବ ଆସନ୍ତୁ, କହିବି…

ଅଶେଷ ଧନ୍ୟବାଦ । ଆସନ୍ତା ସୋମବାର ଦିନ ମୁଁ ଆଉଥରେ ଆପଣଙ୍କୁ ମନେ ପକାଇ ଦେବି । ଭଲକରି ଟିକିଏ ରେକମେଣ୍ଡ କରିବେ ।—

ଷ୍ଟୋର ବାବୁ ଚାଲିଗଲେ ।

ଶନିବାର, ହାଫ୍ ଡେ' ଅଫିସ । ନିଉମାର୍କେଟ ଆଡ଼େ ଗଲା ଅଜୟ । ଗୋଟାଏ ବହି ଦୋକାନରେ ଆସି ଠିଆ ହେଲା । ବହିଗୁଡ଼ିକ ଖୋଲାଇ ଖୋଲାଇ ଭାବିଲା କେଉଁଟା ସବିତାକୁ ଭଲଲାଗିବ ? କାହା ଲେଖା ସେ ପସନ୍ଦ କରେ ବେଶି ?

ସେଲ୍ସମ୍ୟାନ୍ ଅଜୟର ପ୍ରାୟ କାନେ କାନେ କହିଲା—ହଟ୍ ବୁକ୍ ନେବେ ?

ହଟ୍ ବୁକ୍ କଣ ? ବିସ୍ମିତ କଣ୍ଠରେ ପଚାରିଲା ଅଜୟ ।

ସେଲ୍ସମ୍ୟାନଟି ହସି ହସି କହିଲା—ମାନେ, ପ୍ରେମିକ ପ୍ରେମିକାର ମିଳନ ମଧୁର କଥା ଏଥିରେ ଲିପିବଦ୍ଧ ହୋଇଛି । ଛବିଗୁଡ଼ିକ ଏପରି ଯେ ସ୍ତ୍ରୀ ପୁରୁଷର ମିଳନ କି ପ୍ରକାରେ ହେଲେ ଉଭୟେ ତୃପ୍ତି ଲାଭ କରନ୍ତି ବିଶଦ ବିବରଣୀ ସହ ତାହା ଦିଆହୋଇଛି…

ଅଜୟ ଭାବିବାକୁ ଲାଗିଲା । ନା, ଏପରି ବହି ନେବା ଉଚିତ ନୁହେଁ । ଥରେ ଏହିପରି ଖଣ୍ଡିଏ ବହି ନେଇଥିଲା ବୋଲି ସବିତା ତାକୁ ଅପମାନ ଦେଇ କହିଥିଲା—ତୁମର ରୁଚି ଏତେ ଜଘନ୍ୟ । ଏଇପରି ବହି କୌଣସି ଗୃହସ୍ଥ ଘରେ କଣ ରଖାଯାଏ ? ଆଜିକାଲି କେତେ ଉନ୍ନତ ସମାଜ ସମ୍ବନ୍ଧୀୟ ଉପନ୍ୟାସ ବାହାରିଛି, ଯାହା ପଢ଼ି ମନୁଷ୍ୟ କିଛି ଶିକ୍ଷା, ଜ୍ଞାନ

ଓ ଭାଷା ନେଇ ଗର୍ବ କରିବ, ସେପରି ବହି ନଆଣି ତୁମେ ଟଙ୍କାଏ ମୂଲ୍ୟର ବହିଟା ତିନିଟଙ୍କା ଦେଇ ଆଣିଛ ? ତାରିଫ୍ ନ କରି ରହିପାରୁନି ମୁଁ । ତୁମ ବୁଦ୍ଧିକୁ ।

ରାଗରେ ବହିଟାକୁ ଫୋପାଡ଼ି ଦେଇ କହିଲି—ଯା, ସାଙ୍ଗେ ସାଙ୍ଗେ ଫେରାଇ ଦିଅ । ଦାମ୍ ସେ ନଫେରାଇଲେ ନାହିଁ, ଏ ବହି ମୁଁ ଘରେ ରଖିବି ନାହିଁ ।

ନା, ଖଣ୍ଡିଏ ଭଲ ଉପନ୍ୟାସ ଦିଅନ୍ତୁ—ଲେଟେଷ୍ଟ ପବ୍ଲିକେସନ…

ସେଲ୍ସମ୍ୟାନ ଅଗତ୍ୟା ଅନ୍ୟ ବହି ଦେଲା ।

ଆଜ ଆସିବା କଥା । ସକାଳୁ ମୁହଁ ହାତ ଧୋଇ ବଜାରକୁ ଆସି କେତୋଟି ରଜନୀଗନ୍ଧାର ଷ୍ଟିକ୍ ଓ ଛେନା ପୋଡ଼ ନେଇ ଘରକୁ ଫେରି ଗାଧୁଆପାଧୁଆ ସାରି ସଦ୍ୟ ଆଣିଥିବା ଉପନ୍ୟାସଟିକୁ ଖୋଲି ବିଛଣାରେ ପଡ଼ି ପଢ଼ିବାକୁ ଲଗିଲି । ପଢ଼ି ପଢ଼ି ପ୍ରାୟ ୫୦ ପୃଷ୍ଠା ପର୍ଯ୍ୟନ୍ତ ପଢ଼ିଗଲି, ଖୁବ ସୁନ୍ଦର ଲଗୁଛି, ଭାଷା ମଧ୍ୟ ଚମତ୍କାର—ଛାଡ଼ିବାକୁ ଇଚ୍ଛା ହୁଏନା । କେତେବେଳେ ବାରଟା ବାଜି ଯାଇଛି ସେ ଖିଆଲ ନାହିଁ । ଭୋକ ହେଲାରୁ ଖିଆଲ ହେଲା । ଘଡ଼ିଟା ଦେଖି ଚମକି ପଡ଼ିଲି । ଏତେବେଳଯାଏ ସବିତା ଆସିଲା ନାହିଁ କାହିଁକି ? ଗାଡ଼ି କଣ ଲେଟ୍ ଅଛି ?

ହୋଟେଲକୁ ଯିବାପାଇଁ ବାହାରୁଛି ସାହେବଙ୍କ ପିଅନ ଆସି ଦୁଆରେ ହାଜର୍ । ପିଅନ ଖଣ୍ଡିଏ ଚିଠି ତା' ହାତକୁ ବଢ଼ାଇ ଦେଇ କହିଲା—ସାହେବ ଦେଇଛନ୍ତି ?

ସାହେବ କଣ ଆସିଲେଣି ?—ଚିଠି ଖଣ୍ଡିକ ହାତରେ ଧରି ପଚାରିଲା ଅଜୟ ।

ହଁ, ଘଣ୍ଟାଏ ହେଲା ଆସି ପହଞ୍ଚିଛନ୍ତି ?

ଦିଦିମଣି ଫେରି ଆସିଛନ୍ତି ?

ଦିଦିମଣି ଅର୍ଥ ସବିତା । ଅଫିସରେ ସବିତାକୁ ସମସ୍ତେ 'ଦିଦିମଣି' ବୋଲି ଡାକନ୍ତି ।

ନା, ସେ ମା'ଙ୍କ ପାଖରେ ଅଛନ୍ତି…

ପିଅନକୁ ବିଦାୟ କରିଦେଇ ଚିଠି ଖଣ୍ଡିକ ଖୋଲିଲା ଅଜୟ । ମାତ୍ର ତିନିଧାଡ଼ିରେ ସମାପ୍ତ ହୋଇଛି ଚିଠି ଖଣ୍ଡିକ ।

ପ୍ରିୟତମ !—

ଭଲରେ ଅଛି । ସ୍ଥାନଟି ବେଶ୍ ସୁନ୍ଦର । ଉମା-ଦି' ଆଉ ମାସେ ରହିବେ ବୋଲି ଡାକ୍ତର କହୁଛନ୍ତି, ତେଣୁ ମୁଁ ରହିଲି । ପ୍ରଣାମ ନେବ,

ତୁମର ସବିତା…

ସ୍ୱର ସ୍ତବ୍ଧ ହେଲା ଅଜୟର ।

ଆଉ କିଛି ଲେଖିପାରିଲା ନାହିଁ ସବିତା ! ତାର ଏତେଗୁଡ଼ିଏ ଚିଠିର ଉତ୍ତର କଣ ଏତିକିରେ ହୋଇଗଲା । ଅକ୍ଷର ଗୁଡ଼ାକ ଏପରିଭାବେ ଲେଖିଛି କାହିଁକି ? ତାର ଅକ୍ଷର ଗୁଡ଼ିକତ' ବାଇଗଣ ମଞ୍ଜି ପରି, ଶ୍ରେଷ୍ଠ ଶ୍ରେଷ୍ଠ ମୁକ୍ତାପରି । ଆଉ କଣ ଅନିଚ୍ଛା ସତ୍ତ୍ୱେ ଚିଠି ଖଣ୍ଡିକ ଲେଖିଛି ସେ ।

ହୋଟେଲକୁ ଗଲାନାହିଁ । ଛେନା ପୋଡ଼ରେ କ୍ଷୁଧା ନିବାରଣକରି ପୁଣି ଶଯ୍ୟାରେପଡ଼ି ବହି ଖଣ୍ଡିକ ଖୋଲି ପଢ଼ିବାକୁ ଲାଗିଲା ।

ଏକ ସମୟରେ ନିଦ ଲାଗିଗଲା ଅଜୟକୁ ।

ଉଠିଲା ଯେତେବେଳେ ବିରକ୍ତିରେ ମନଟା ଭରିଗଲା ।

କାଲି ସାହେବଙ୍କ ପାଖରୁ ସବୁକଥା ବୁଝି ଖୁବ୍ କଡ଼ାକରି ଚିଠି ତା' ପାଖକୁ ଲେଖିବାକୁ ହେବ । ନଆସିଲେ ନାହିଁ, ସ୍ୱେଚ୍ଛା ତ' ସ୍ୱେଚ୍ଛା—ତା' ବୋଲି ସ୍ୱାମୀ ପାଖକୁ କପରି ଚିଠି ଦେବାକୁ ହୁଏ ତାହା କଣ ଏତେ ଉପନ୍ୟାସ ପଢ଼ି ଜାଣିଲା ନାହିଁ ।

ପରଦିନ ସାହେବଙ୍କ ସହିତ ଦେଖା କରି ଅଜୟ ସବିତା ଆସିବାର ଅସୁବିଧାର କାରଣ ଶୁଣି ପାରିଲା । ତେବେ ଆସନ୍ତା ମାସରେ ସେମାନେ ଫେରିବେ ।

ଷ୍ଟୋର ବାବୁଙ୍କ କଥା ପକାଇଲା ଅଜୟ । ଷ୍ଟୋର ବାବୁ ଅବଶ୍ୟ ମନେପକାଇ ଦେଇଥିଲେ । ସାହେବ କଣ ବିବେଚନା କରି ଦେଖିବେ ବୋଲି କହିଲେ ଏବଂ ଷ୍ଟୋର ବାବୁଙ୍କର ସର୍ଭିସ ବୁକ୍‌ଟା ତାଙ୍କ ପାଖକୁ ପଠାଇ ଦେବା ପାଇଁ ନିର୍ଦ୍ଦେଶ ଦେଲେ ।

କିଛି ସମୟପରେ ଷ୍ଟୋର ବାବୁଙ୍କର ସର୍ଭିସବୁକ୍ ଫେରିଲା । ଅଜୟ
ବାବୁଙ୍କର ସୁପାରିସ କାର୍ଯ୍ୟକାରୀ ହୋଇଛି । ତତ୍‌ସହ ଆଉ ଖଣ୍ଡିଏ ଚିର୍-
କୁଟିରେ ଲେଖା ଅଛି—ଗତ ମାସରୁ ୫ ଟଙ୍କା କରି ଇନ୍‌କ୍ରିମେଣ୍ଟ
ଦିଆହୋଇଛି ଓ ସବିତା ସାମନ୍ତ ପାଇଛି ପଇଁଚାଳିଶ ଟଙ୍କା ଇନ୍‌କ୍ରିମେଣ୍ଟ ।
ତାହା ମଧ୍ୟ ଗତ ମାସରୁ ବୋଲି ଧରାଯିବ ···

ମୁଖ୍ୟ ବିଷୟ ଆନନ୍ଦର ବିଷୟ । ଅଜୟ କାହିଁକି ଆନନ୍ଦ ଉପଭୋଗ
କରିପାରୁ ନାହିଁ—କାହିଁକି ସେ ଉନ୍ନତି ପାଇଁ ପ୍ରବୋଧ ଦାସଙ୍କ ପ୍ରତି କୃତଜ୍ଞ
ହୋଇ ପାରୁନାହିଁ ? କାହିଁକି ସବିତାର ମୁହଁଟି ବାରମ୍ବାର ଆଖି ଆଗରେ
ଘୂରି ବୁଲୁଛି ?

ହାସ୍ୟମୟୀ ସବିତାର ମୁହଁଟି ପାଣ୍ଡୁର ଦେଖାଯାଉଛି କାହିଁକି ?
କାହିଁକି ବୟସର ଗ୍ରୀଷ୍ମ ଯେପରି ପଡ଼ୁଛି ସେଇପରି ମୁହଁର ଚମଡ଼ାଗୁଡ଼ିକ
କୁଞ୍ଚିତ ଦେଖାଯାଉଛି ? ମାତ୍ର କୋଡ଼ିଏ ବର୍ଷ ବୟସରେ ଯୌବନମୟୀ
ସବିତାର ଦେହରୁ ଯୌବନ ବିଦାୟ ନେଲା···

ରାତିରେ ସ୍ୱପ୍ନ ଦେଖିଲା ଅଜୟ । କଙ୍କାଳ ସାର ଗୋଟିଏ ମୂର୍ତ୍ତି
ଅତି ସୁନ୍ଦରୀ ଥିଲା—ଆଜି ସେ ଅସ୍ଥିସମ୍ବଳା ।

କିଏ ଏହି ନାରୀ ! ସବିତା କି ?

ନିଦଟା ଭାଙ୍ଗିଗଲା । ନା—ନା, ଏ ସବିତା ନୁହେଁ; ସବିତା
ହୋଇପାରେନା । ସଦ୍ୟ ପ୍ରସ୍ଫୁଟିତ ରକ୍ତ ଗୋଲାପ ସଦୃଶ ପୁଷ୍ପଟି ଏତେଶୀଘ୍ର
ଝାଉଁଳି ପାରେନା ।

ଏହାପରେ ଘଟଣାଟି ସଂକ୍ଷିପ୍ତ, କିନ୍ତୁ ମର୍ମନ୍ତୁଦ ।

ଦିନେ ଅଫିସକୁ ଆସି ଅଜୟ ଶୁଣିଲା ସାହେବ ଦାର୍ଜିଲିଂ ଯାଇଛନ୍ତି ।
ସେ ଠିକ୍ କରିଥିଲା ଏଥର ସାହେବ ଯଦି ଯାଆନ୍ତି ସେ ସାଙ୍ଗରେ ଯିବାକୁ
କହିବ, ଅନେକଦିନ ହେଲା ଦେଖିନାହିଁ – ଦେଖି ଆସିବ ତାର ଜୀବନର
ଧ୍ରୁବ ତାରକୁ ।

ମନ ବିଶେଷ ବିଚଳିତ ହୋଇପଡ଼ିଲା । ଛୁଟିପାଇଁ ଦରଖାସ୍ତ ଲେଖି
ସୁପରିନଟେନଡେଣ୍ଟଙ୍କୁ ଦେଇ ସେଇଦିନ ରାତିରେ ଦାର୍ଜିଲିଂ ଯାତ୍ରା କଲା
ଅଜୟ ।

ପରଦିନ ରାତି ଏଗାରଟାରେ ଠିକଣା ଖୋଜି ଖୋଜି ପହଞ୍ଚିଲି । ଗ୍ରେଟ ଗୋଟିଏ ବଂଗ୍ଲୋ ଟାଇପର ଘର । ଗୋଟାଏ ଘରେ ଆଲୁଅ ଜଳୁଥିବା ଦେଖି ଧୀରେ ଧୀରେ ଆସି ଦୁଆର ମୁହଁରେ ଛିଡ଼ାହେଲି । କାଚ ଝରକା ବାଟେ ଦୁଇଟି ମୂର୍ତ୍ତି .ଭିତରେ ବସିଥିବା ସେ ଦେଖି ପାରିଲି । ଦେଖି ପାରିଲି ଟେବୁଲ ଉପରେ ମଦ ବୋତଲ ଓ ଗିଲାସ ରହିଛି । ପ୍ରବୋଧ ଦାସ ମଦ ଢାଳି ଦେଉଛନ୍ତି ସବିତାକୁ ଓ ନିଜେ ମଧ୍ୟ ପାନ କରୁଛନ୍ତି ।

ସବିତାର ଅଙ୍ଗବାସ ଶିଥିଳ । ପ୍ରବୋଧ ଦାସ ଲୁବ୍ଧ ଦୃଷ୍ଟିରେ ଅର୍ଦ୍ଧ ବିବସ୍ତ୍ରା ସବିତା ଆଡ଼େ ଚାହିଁ ଅର୍ଦ୍ଧପାନପୃଷ୍ଟିକୁ ଗଳାଧଃକରଣ କରି କହୁଥାନ୍ତି—ୱେଲ ହାଓ ସୁଇଟ୍ ଇଉ ସବିତା…

ପ୍ରବୋଧ ! ଗୋଟାଏ କଥା କହିବ…ସବିତାର କଣ୍ଠସ୍ୱର ଜଡ଼ାଗ୍ରସ୍ତ । ଆଖି ଦୁଇଟି ମୁଦ୍ରିତ ।

କୁହ ଡାର୍ଲିଂ…

ମୁଁ ଅନ୍ତଃସତ୍ତ୍ୱା…ତିନିମାସର ।

କଣ ସେପରି ଭାବିଲେ ପ୍ରବୋଧ ଦାସ । କହିଲେ—ଚିନ୍ତା କଣ ? ଭଲ ଡାକ୍ତରର ଅଭାବ ଏଠାରେ ନାହିଁ । ତୁମେ ସମ୍ପୂର୍ଣ୍ଣ ଭଲ ହେବା ପରେ ଯିବ…

ଆଉ ସହ୍ୟକରିପାରିଲି ନାହିଁ ଅଜୟ । ଉତ୍ତେଜନାରେ ଥରୁଥାଏ । ଏଇ ତାର ସ୍ତ୍ରୀ ଧର୍ମପତ୍ନୀ ସବିତା । କାହିଁକି ସେ ପତ୍ରର ଉତ୍ତର ଦେଉ-ନଥିଲା ତାହାର ଉତ୍ତର ପାଇଲି ଏଥର । ଆଉ ଠିଆହୋଇ ପାରିଲି ନାହିଁ । ସର୍ବାଙ୍ଗ ତାର ଥର ଥର ହୋଇ ଟଳୁଛି, ବୋଧହୁଏ ମୂର୍ଚ୍ଛା ଯିବ ।

ଟଳି ଟଳି ବାହାରି ଆସିଲି ଗେଟ୍ ବାହାରକୁ । ଏ କଣ କଲ ଭଗବାନ—ମୋର ସଂସାରକୁ ଛାରଖାର କଲ କାହିଁକି ? ମୁଁ ତ' କାହାର କ୍ଷତି କରିନାହିଁ । ଏ ଦାରୁଣ ଲଜ୍ଜା କଣ କୌଣସି ସ୍ୱାମୀ ପକ୍ଷରେ ସହନୀୟ ? ସମସ୍ତେ କୁତ୍ସିତ ଇଙ୍ଗିତରେ ମୋତେ କ୍ଷତ ବିକ୍ଷତ କରିଦେବେ । ତା' ଅପେକ୍ଷା—ଏ ଯନ୍ତ୍ରଣା ସହ୍ୟ କରିବା ଦୂର୍ବଳୁ, ଆସ ଶନି—ଆସ ଦେବ

ଦବାକର—ଆସ ଅଣଷାଣ ପବନ, ଉଡ଼ାଇ ନିଅ ମୋତେ, ଘୋଡ଼ଜାଲ—ଭସ୍ମ କରିଦିଅ···

ଅଜୟର ମନେହେଲା, ଗୋଟାଏ ବିଷଧର ସର୍ପ ଯେପରି ତାକୁ ଆଘାତ କରିବାପାଇଁ ଉଦ୍ୟତ ହେଉଛି—ଗୁଡ଼ାଏ କବନ୍ଧ ନୃତ୍ୟ କରୁଛି ତାର ଆଖି ଆଗରେ । ପିଶାଚପରି ନୃତ୍ୟ କରୁକରୁ ବିକୃତ କଣ୍ଠରେ କହୁଛନ୍ତି, କୁଳଟା ସ୍ତ୍ରୀର ମୁଖ ଦର୍ଶନରେ ପାପ···ତା ପାଖରୁ ଦୂରେଇ ରୁହ—ଦୂରେଇ ରୁହ···

ଅଜୟ ଗୁଳିଛି । ସେଇ ବିଷଧର ସାପଟା ତାକୁ ତାଡ଼ନା କରୁଛି । କି ଭୟଙ୍କର ତାର ଜିହ୍ୱା—ଲହଲହ କରି ଗୋଡ଼ାଇଛି, ଟିକିଏ ଠିଆ ହେବାର ଅବସର ଦେଉନାହିଁ ।

ପୃଥିବୀ ତାକୁ ଘୃଣା କରୁଛି । ବିଟପୀ ନାରୀର ସ୍ୱାମୀ ବୋଲି ଘୃଣା କରୁଛନ୍ତି ସମସ୍ତେ ।

ସକାଳେ ଦୁଆର ଉପରେ କରାଘାତ ଶବ୍ଦରେ ପ୍ରବୋଧ ଦାସଙ୍କର ନିଦ୍ରା ଭାଙ୍ଗିଗଲା । ଦୁଆର ଖୋଲି ଦେଖିଲେ ଜଣେ ପୁଲିସ ଅଫିସର ଠିଆ ହୋଇଛନ୍ତି । ତାଙ୍କୁ ଦେଖି ପୋଲିସ ଅଫିସରଟି ପକେଟରୁ ଖଣ୍ଡିଏ ଚିଠି ବାହାର କରି ବଢ଼ାଇ ଦେଲେ । ପ୍ରବୋଧ ଦାସ ବିସ୍ମିତ ହୋଇ ଚିଠି ଖଣ୍ଡିକ ଖୋଲି ପଢ଼ିଲେ ଲେଖାଅଛି—ମୋର ମୃତ୍ୟୁ ପାଇଁ କେହି ଦାୟୀ ନୁହଁନ୍ତି । ସବିତାକୁ ମୋର ଆଶୀର୍ବାଦ ଦେବେ । ଇତି-ଅଜୟ ।···

ନିଳତା !—ଊର୍ମିଳା କହିଲା···ତୋ ଆଗରେ ଲୁଚାଇ ଲାଭ ନାହିଁ । ତୋପରି ବନ୍ଧୁ ମୁଁ ପାଇବି ନାହିଁ । ତୁ ନିଶ୍ଚୟ ସବୁକଥା ଶୁଣି ବୁଝିପାରିଛୁ ମୁଁ ସେହି କୁଳଟା ବିପଥଗାମିନୀ ହତଭାଗିନୀ ସବିତା ସାମନ୍ତର ଝିଅ । ସବିତା ଗର୍ଭନଷ୍ଟ କରିବାକୁ ଦେଇନାହିଁ । ମୋତେ ଜନ୍ମ ଦେଇ ସେ

ଦେହତ୍ୟାଗ କରିଲ । ପ୍ରବୋଧ ଦାସ ସବିତାର ଶେଷ ଅନୁରୋଧ ରକ୍ଷାକରି ମୋତେ ଅନାଥାଶ୍ରମରେ ରଖି ବଡ଼ ହେବା ପରେ ଶିକ୍ଷାଦାନର ବ୍ୟବସ୍ଥା କରି 'ଏତେଦୂର ଆଣିଛନ୍ତି । ବର୍ଷିକ ତଳେ ଯେତେବେଳେ ପ୍ରବୋଧ ଦାସ ମୃତ୍ୟୁ ଶଯ୍ୟାରେ ସେତେବେଳେ ମୋତେ ପାଖକୁ ଡକାଇ ପଠାଇଲେ । ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ଆଗରୁ ହୋଇଥିଲା । ପୁତ୍ର ଶଙ୍କରଦାସ ଓ ମୋତେ ପାଖରେ ବସାଇ ଅତୀତର ସମସ୍ତ ଘଟଣା କହିଥିଲେ; ମା ଓ ବାବାଙ୍କର ଯେତେଗୁଡ଼ିଏ ଘଟିଥିଲା ସବୁ ଦେଖାଇଥିଲେ । ନିଜର ସମ୍ପତ୍ତିରୁ ଅର୍ଦ୍ଧେକ ମଧ୍ୟ ମୋତେ ଦାନ କରିଛନ୍ତି ମୋର ନକଲି ପିତା । ଶଙ୍କର ଦାସ ମୋର ଭାଇ ବୋଲି ତୋ ପାଖରେ ଲୁଚାଇଥିଲି କାଳେ ତୁ ଶୁଣି ଘୃଣା କରିବୁ ବୋଲି ।

ଉର୍ମି···ସସ୍ନେହରେ ଉର୍ମିଳାକୁ ବକ୍ଷ ବନ୍ଧ କଲା ଲଳିତା । ଉର୍ମିଳା ଆଖିରେ ଅଶ୍ରୁ ଦେଖି କହିଲା—ଜାଣନା ଉର୍ମି, ତୋର ଜନ୍ମପାଇଁ ତୁ-ତ' ଦାୟୀ ନୁହଁ···

ପରଦିନ ଦେଖାଗଲା ଲଳିତା ଓ ଉର୍ମିଳା ଘରେ ନାହାନ୍ତି । ହଷ୍ଟେଲ ଇନସପେକ୍ଟର ଖବର ଦେଲେ, ଖବର ଦେଲେ ଲଳିତାର ପିତା କମଳାପତି ଚୌଧୁରୀଙ୍କୁ ଓ ଉର୍ମିଳାର ଅଭିଭାବକ ଅନାଥ ଆଶ୍ରମର ଅଧ୍ୟକ୍ଷଙ୍କୁ ।

କମଳା ପତି ଚୌଧୁରୀ ସେତେବେଳେ ଗୋଟାଘାସ୍ତ ଘର ଭିତରେ ଉନ୍ମାଦ ପରି ପଦଚାରଣ କରୁଛନ୍ତି ହାତରେ ଖଣ୍ଡିଏ କାଗଜ ଧରି ।

କାଗଜଟିରେ ଲେଖାଥିଲା—ରବିବାର ରାତି ଦଶଟାରେ କଲ୍ପନା ଟକିଜ୍‌ର କ୍ୟାଣ୍ଟିନରେ—ମୁଁ ଥିବ । ଆପଣ କନ୍ୟା ଆପଣଙ୍କର କେହି ରିପ୍ରେଜେଣ୍ଟଟିଭ୍ ଦଶହଜାର ଦଶଟଙ୍କିଆ ନୋଟ୍ ନେଇ କ୍ୟାଣ୍ଟିନକୁ ଆସିବେ । ଟଙ୍କା ପାଇବାର ଦୁଇଘଣ୍ଟା ପରେ ଲଳିତା ଘରେ ଯାଇ ପହଞ୍ଚିବ । ପୁଲିସରେ ଜଣାଇଲେ କ୍ଷତିର ସମ୍ଭାବନା ।···ତଳେ ତାହାର ସ୍ୱାକ୍ଷର ନାହିଁ ।

ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କ ପାଖରୁ ଖବର ପାଇ ଥାନାରୁ ଜଣେ ଅଫିସର ଆସି ଦେଖା କଲେ ।

କମଳାପତି ବହୁ ଚିନ୍ତା କରି ମନସ୍ଥିର କରି ପକାଇଲେ । ଚିଠିକଥା ଜଣାଇଲେ ନାହିଁ ପୁଲିସ ଅଫିସରଙ୍କୁ । କେବଳ ବିଷାଦଭରା କଣ୍ଠରେ କହିଲେ—ଆପଣମାନେ ଚେଷ୍ଟା କରନ୍ତୁ, ମୁଁ ବଡ଼ ଅସୁସ୍ଥତା ବୋଧ କରୁଛି, ଏ ଆଘାତ ମୋର ପ୍ରେସ୍‌ଟିଜ୍ ଓ ବଂଶ ମର୍ଯ୍ୟାଦାକୁ କପର କ୍ଷୁର୍ଣ୍ଣ କରୁଛି ଏହା ନିଶ୍ଚୟ ବୁଝି ପାରୁଛନ୍ତି ।

ଅଫିସର ବଦାନ୍ୟ ନେଇ ନେଇ କହିଲେ—ଆଉ ଗୋଟିଏ ଦୁଃସମ୍ବାଦ, ମିଃ-ଚୌଧୁରୀ ! ଲଳିତା ଓ ଊର୍ମିଳା ଏକା ରୁମ୍‌ରେ ଥାନ୍ତି । ଊର୍ମିଳା ମଧ୍ୟ ନିରୁଦ୍ଦିଷ୍ଟ । କିନ୍ତୁ ହଷ୍ଟେଲରୁ ତାଙ୍କର ଯେଉଁ ଠିକଣା ପାଇଛୁ ସେଠାକାର ଅଧିକାଂଶ କହିଲେ, ଊର୍ମିଳା ଦେବୀ ବୋଲି କାହାରିକୁ ସେ ଚିହ୍ନନ୍ତି ନାହିଁ । ଏଣୁ—

ତାହା ହେଲେ ଊର୍ମିଳା ଉପରେ ଆପଣମାନଙ୍କର ସନ୍ଦେହ ହେଉଛି ? —କମଳାପତି ଚୌଧୁରୀ ପଚାରିଲେ ।

ନେଚୁରାଲି ହେବାର କଥା । ଆମେ କିନ୍ତୁ ନିଶ୍ଚୟ ଖୋଜ ବାହାର କରିବୁ । ତାଙ୍କର ଶରୀରର ବର୍ଣ୍ଣନା ଯେତେବେଳେ ପାଇଛୁ···ତାହାହେଲେ ଆସୁଛି, ମିଃ ଚୌଧୁରୀ ! ଇନ୍ ଦ ମିନ୍ ଟାଇମ୍, ଆପଣ ଯଦି କିଛି ସମ୍ବାଦ ପାଆନ୍ତି ଦୟାକରି ଥାନାକୁ ଜଣାଇବେ ।

ନିଶ୍ଚୟ···

ଅଫିସର ଚାଲିଗଲେ ।

କମଳାପତି ଚୌଧୁରୀ ଚିନ୍ତା କରିବାକୁ ଲାଗିଲେ—ଆଜି ବୁଧବାର, ଆହୁରି ଗୁରୁବାର ଅପେକ୍ଷା କରିବାକୁ ପଡ଼ିବ । କାହାରି ଆଗରେ ଏ' ଘଟଣା ପ୍ରକାଶ କରିବା ଉଚିତ ନୁହେଁ । ଏପରି କି ଲଳିତାର ମା'କୁ ମଧ୍ୟ କୁହାଯାଇ ପାରେନା । ଶୁଣିଲେ ସେ ହୁଲସ୍ଥୁଲ କାଣ୍ଡ କରି ବସିବେ । ଲଳିତାର କ୍ଷତି ହୋଇପାରେ ଏପରି କୌଣସି କାମ କରିବା ବର୍ତ୍ତମାନ ଅନୁଚିତ ।

ଟଙ୍କାଟା ପାଖରେ ରଖିଥିବା ଉଚିତ୍ । ହୁଏତ କେତେବେଳେ ଖବର ଆସିପାରେ ସାଙ୍ଗେ ସାଙ୍ଗେ ଟଙ୍କାଟା ଦେବାକୁ ହେବ ।

ଚିଠିଟାକୁ ପୁଣିଥରେ ପଢିଲେ ।

ଡାକରେ ଆସିଛୁ । ଡାକ ମୋହର ଅସ୍ପଷ୍ଟ ହେଲେ ମଧ୍ୟ ତାରିଖଟି ସ୍ପଷ୍ଟ । ଦୁଇଦିନର ଆଗର ଚିଠି । ତାହାହେଲେ ଲଳିତାକୁ ଅପହରଣ କରିବା ପୂର୍ବରୁ ପତ୍ରଦାତା ଚିଠି ପୋଷ୍ଟ କରିଛି ।

ଅସଂଖ୍ୟ ଚିନ୍ତା କମଳାପତିଙ୍କର । ଲଳିତାର ମୂର୍ତ୍ତିଟି ଚକ୍ଷୁ ସମ୍ମୁଖରେ ଭରି ଉଠିଲା । ଗୋଟାଏ କ୍ରନ୍ଦନ ଶବ୍ଦ ଯେପରି ସେ ଶୁଣି ପାରୁଛନ୍ତି । ଲଳିତା କାନ୍ଦି କାନ୍ଦି କହୁଛି—ବାବା ! ଭାରି କଷ୍ଟ, ମୁଁ ସହ୍ୟ କରି ପାରୁନାହିଁ ।

ଅଶ୍ରୁ ଗଡ଼ି ପଡ଼ିଲା କମଳାପତିଙ୍କର ନୟନ ଯୁଗଳରୁ । ନା, ଅର୍ଥଯାଉ ସେ ଶ୍ରେୟ—କିନ୍ତୁ ଲଳିତା କପର ଉଦ୍ଧାର ପାଇ ଆସୁ ।

ପତ୍ରପ୍ରେରକ ଯଦି ଲେଖିଥାନ୍ତା ଆଜି ଟଙ୍କା ନେଇ ଯିବାକୁ ହେବ ବୋଲି ତେବେ ମଧ୍ୟ ସେ ରାଜି ହୁଅନ୍ତେ । ରବିବାର, ସିଏତ' ଅନେକ ଡେରି । ତାଙ୍କର ବିଷାଦିତ ମୁଖ ଦେଖି ସ୍ତ୍ରୀ ପଚାରିଲେ କାରଣ । ବ୍ୟବସାୟ ସମ୍ବନ୍ଧୀୟ ଗୋଳମାଳ କଥା କହି ଅସଲ ଘଟଣାଟି ଏଡାଇ ଦେଲେ ସେ । କିନ୍ତୁ ସ୍ତ୍ରୀଙ୍କ ମନରେ ଖଟ୍‌କା ଲାଗିଲା । ମନେ ମନେ ଭାବିଲେ ବ୍ୟବସାୟରେ ଅନେକଥର କ୍ଷତି ଘଟିବା କଥା ସେ ଶୁଣିଛନ୍ତି, ଶୁଣିଛନ୍ତି କର୍ମଚାରୀମାନଙ୍କର ଦାବୀ ନେଇ ଗଣ୍ଡଗୋଳ—କିନ୍ତୁ କୌଣସିଦିନ ସ୍ୱାମୀଙ୍କୁ ଏତେ ଦୁର୍ବଳ ହେବାର ଦେଖି ନାହାନ୍ତି ସେ ।

କମଳାପତି ଚୌଧୁରୀ ନମଃନମଃ କରି ଗଣ୍ଡାଏ ଖାଇ ଶଯ୍ୟାରେ ଆସି ଶୋଇଲେ । ଅସଂଖ୍ୟ ଚିନ୍ତା ମୁଣ୍ଡ ଭିତରେ ଖେଳୁଥାଏ ଲଳିତାକୁ କେନ୍ଦ୍ର କରି । ସେମାନେ କଣ ଲଳିତାକୁ କଷ୍ଟ ଦେବେ । ତାକୁ ନଖୁଆଇ ଶୁଖେଇ ଶୁଖେଇ ଦୁର୍ବଳ କରି ଦେବେ ?

ନା—ଏତେ ସେମାନେ ଅମଣିଷ ନୁହଁନ୍ତି । ଗୋଟିଏ ଝିଅକୁ ଖାଇବାକୁ ଦେବାର ସାମର୍ଥ୍ୟ ନିଶ୍ଚୟ ଏହି ଅପହରଣକାରୀର ଅଛି । ମାତ୍ର ଲଳିତାର ମୁହଁକୁ କଣ ଖାଦ୍ୟ ଯିବ ? ତାର ଖାଲି ମନେ ପଡ଼ୁଥିବ ଘରକଥା—ବାପ, ମା' ଓ ଭାଇର କଥା ! ଉର୍ମିଳାର କଥା ମଧ୍ୟ ଚିନ୍ତା କଲେ କମଳାପତି ।

ଉପରଓଳିବେ ଦୁଇଟି ତରୁଣୀକୁ ଅପହରଣ କରି ନେଲେ ଦୁର୍ବୃତ୍ତ ଦଳଟି ! ସେମାନେ କଣ ବାଧା ଦେଇ ପାରିଲେ ନାହିଁ ? ଚିତ୍କାର କରି ଲୋକ ଜମାଇ ପାରିଲେ ନାହିଁ ?

ଇନସ୍‌ପେକ୍‌ଟରଙ୍କ କଥା ମନେ ପଡ଼ିଲାରୁ ଊର୍ମିଳା ପ୍ରତି ଗୋଟାଏ ସନ୍ଦେହ ଜାତ ହେଲା । ଊର୍ମିଳା ତାର ଯେଉଁ କଲେଜ ରେଜେଷ୍ଟରରେ ଲେଖାଇଥିଲା ପୁଲିସ ସେଠାରୁ ଖବର ନେଇ ଜାଣି ପାରିଛି ଊର୍ମିଳା ବୋଲି କେହି ସେଠାରେ ନଥିଲେ ।

ନାନା ଦୁଶ୍ଚିନ୍ତା ଆସି ଭିଡ଼ କଲା ମସ୍ତିଷ୍କରେ ।

ଶେଷରେ ଠିକ୍ କଲେ ଟଙ୍କାତ' ଦେବାକୁ ହେବ, ତଥାପି ଜୀବଦ୍ଦଶାରେ ତରୁଣୀ ଦୁଇଟି ଅନ୍ତର୍ହିତ ହେଲେ, ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କ ପାଖରୁ ବୁଝିବା ଉଚିତ୍ । ଶଯ୍ୟାରୁ ଉଠି ପୋଷାକ ବଦଳାଇ ବାହାରକୁ ଯିବାପାଇଁ ଉଦ୍ୟତ ହେଉଥିଲେ, ସ୍ତ୍ରୀ ଆସି ପହଞ୍ଚିଲେ ।

ପ୍ରଶ୍ନିଳ ଦୃଷ୍ଟିରେ ଚାହିଁଲେ ସେ ସ୍ତ୍ରୀଙ୍କ ଆଡ଼େ । ସ୍ତ୍ରୀ କହିଲେ— ତୁମେ କଣ ବାହାରକୁ ଯାଉଛ ?

ହିଁ, ଅଫିସ ଆଡ଼େ ଟିକିଏ ବୁଲିଆସେ । ମେନେଜର ଗୋଳମାଳ ମେଣ୍ଟାଇ ପାରିଲେ କି ନା ଦେଖି ଆସେ···

ତେବେ ଶୁଣ, ତୁମେ ତ' ଗାଡ଼ିରେ ଯାଉଛ; ମୋତେ ଟିକିଏ ଲଳିତାର ହଷ୍ଟେଲରେ ଛାଡ଼ି ଦେଇଯିବ । ଫେରିଲାବେଳେ ନେଇ ଆସିବ, ନାହିଁ ତ' ମୁଁ ରିକ୍‌ସାରେ ଚାଲି ଆସିବି । ଅନେକ ଦିନ ହେଲା ତାକୁ ଦେଖିନାହିଁ । ମନଟା ବ୍ୟସ୍ତ ହେଉଛି । କାଲି ରାତିରେ ସ୍ୱପ୍ନ ଦେଖି ମନଟା ଆହୁରି ଖରାପ ଲାଗୁଛି···

ସ୍ୱପ୍ନ ! ତୁମେ ପୁଣି କି ସ୍ୱପ୍ନ ଦେଖିଲ ?

ଦେଖିଲି ତାକୁ ଖୁବ୍ ଜର ହୋଇଛି । ବଡ଼ କଷ୍ଟ ପାଉଛି···

ହସିଲେ କମଳାପତି । ହସଟା ଯାନ୍ତ୍ରିକ । କହିଲେ—ସ୍ୱପ୍ନଗୁଡ଼ାକ ଯଦି ସତ ହୁଅନ୍ତା ତାହେଲେ ଆଉ ଚିନ୍ତା କରିବାର କଣ ଥିଲା ? ମୁଁ କେତେଥର ସ୍ୱପ୍ନ ଦେଖିଛି ଲଟେରୀରୁ ଲକ୍ଷ ଲକ୍ଷ ଟଙ୍କା ପାଇଛି ବୋଲି ସତ ହୋଇଛି କି ? ଶୁଣ, କାଲି ମୁଁ ଲଳିତାର ଚିଠି ପାଇଛି ସେ ସାଙ୍ଗ-ମାନଙ୍କ ସାଙ୍ଗରେ ଗୋଟାଏ ଏକ୍‌ସକରସନରେ ଯାଇଛି, ସାଙ୍ଗରେ ଜଣେ ଅଧ୍ୟାପିକା ମଧ୍ୟ ଯାଇଛନ୍ତି । ଦୁଇସପ୍ତାହ ପରେ ସେମାନେ ଫେରିବେ ।

ସତ ନୁହେଁ ତ' କଣ ତମର ସ୍ୱପ୍ନଟା ସତ୍ୟ ?

ଆଉ କିଛି କହିଲେ ନାହିଁ ସ୍ତ୍ରୀ । ଫେରିଗଲେ । କମଳାପତି ସାନ୍ତ୍ଵନା ଦେଲେ ମଧ୍ଯ ନିଜ ମନକୁ ଶାନ୍ତ କରି ପାରିଲେ ନାହିଁ । ଅସଲ ଘଟଣା ଜାଣନ୍ତି ସେ । ବାହାରକୁ ଆସି ଖୋଜିଲେ ଡ୍ରାଇଭରକୁ ଯଦି ସାଙ୍ଗରେ ନିଅନ୍ତି ତାହେଲେ ସ୍ତ୍ରୀ ଜାଣି ପାରିବେ ଡ୍ରାଇଭର ପାଖରୁ ଯେ ସେ କାରଖାନା ନଯାଇ ହଷ୍ଟେଲକୁ ଯାଇଛନ୍ତି । ଆଉ କେତେ ମିଛକଥା କହିବେ ସେ । ନା···ଦରକାର ନାହିଁ, ନିଜେ ଡ୍ରାଇଭ୍ କରି ଯିବେ ।

ଗ୍ୟାରେଜ୍‌ରୁ ଗାଡ଼ି ବାହାରକରି ଷ୍ଟାର୍ଟ ଦେଲେ ।

ଗାଡ଼ିଟା ଧୂଆଁ ଛାଡ଼ି ଛାଡ଼ି ଅଦୃଶ୍ୟ ହୋଇଗଲା ।

ରାତିରେ ବିଛଣାରେ ଶୋଇ ଭାବୁଥିଲେ କମଳାପତି ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ କଥା । ଦୁଆର ଖୋଲାଅଛି । ପବନ ଆସି ଦେହରେ ଲାଗୁଛି, ତଥାପି ଉଠି ଦୁଆରଟାକୁ ବନ୍ଦ କରିବାପାଇଁ ଶଯ୍ୟାରୁ ଉଠିବାକୁ ଇଚ୍ଛା ହେଉନା । ଲଳିତା ଓ ଉର୍ମିଳା ରାତ୍ରି ଭୋଜନ ପରେ ନିଜ ରୁମ୍‌କୁ ଆସିଥିଲେ । ସେମାନେ ପରୁଦିନପରି ମଧ୍ଯ ସେଦିନ ଘରର ଆଲୁଅ ଲିଭାଇ ଶୋଇଥିଲେ । ଅଧଘଣ୍ଟା ପରେ ସୁପରିଣ୍ଟେଣ୍ଡେଣ୍ଟ ନିଜେ ପ୍ରତ୍ୟେକ ରୁମ୍ ବୁଲି ବୁଲି ଠିକ୍ କରିଥିଲେ । ଏପରିକି ହଷ୍ଟେଲର ଗେଟ୍ ଉପର ଗେଟ୍‌ରେ ତାଲା ଦେବାର ସେ ଦେଖିଛନ୍ତି । ଏହାପରେ କଣ ଯେ ହେଲା ସେ ବୁଝିପାରୁ ନାହାନ୍ତି ।

ସକାଳେ ପ୍ରାର୍ଥନା ବେଳେ ସମସ୍ତଙ୍କୁ ଦେଖିଲେ, ମାତ୍ର ଦୁଇଜଣଙ୍କୁ ନଦେଖି କେତେକ ଛାତ୍ରୀଙ୍କୁ ନେଇ ସେମାନଙ୍କ ରୁମକୁ ଆସି ଦେଖିଲେ ଦୁଆର ଖୋଲା, ଭିତରେ କେହି ନାହାନ୍ତି । ଖୋଜା ଖୋଜି ଚାଲିଲା । କେଉଁଠାରେ ନପାଇ ଶେଷରେ ସେ ପୁଲିସରେ ଖବର ଦେବାକୁ ବାଧ୍ଯ ହେଲେ ।

ଆଶ୍ଚର୍ଯ୍ୟ ଅନ୍ତର୍ଦ୍ଧାନ । କମଳାପତି ଯେପରି ଏ ରହସ୍ୟର କୂଳ କିନାରା ପାଉନାହାନ୍ତି—ଗେଟରେ ଖୁବ ପଡ଼ିଥିଲା ପାହାରା, ଗେଟ୍ ଖୁବ

ପୁଣି ସୁପରିନଟେଣ୍ଡେଣ୍ଟଙ୍କ ପାଖରେ—ଶୂନ୍ୟରେ ଉଡ଼ିଗଲେ ଶକ୍ତ ସମର୍ଥ ତରୁଣୀ ଦୁଇଟି । ଅନ୍ୟମନସ୍କ ହୋଇ ପଡ଼ିଥିଲେ କମଳାପତି ।

ସୁପରିନ୍‌ଟେନ୍‌ଡେଣ୍ଟ ଅଭୟ ପଟ୍ଟନାୟକଙ୍କୁ କଣ ସନ୍ଦେହ କରାଯାଇ ପାରେ ? ସୁପରିନଟେନଡେଣ୍ଟଙ୍କ ରୁମ୍‌ରେ ବସି କଥାବାର୍ତ୍ତା ହେଉଥିଲେ କମଳାପତି । ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ଟେବୁଲ୍ ଉପରେ ଥିବା ଖଣ୍ଡିଏ ପୋଷ୍ଟାଲ ପାଶବୁକ ଉପରେ ।

ପଛକୁ ବୁଲିକି ଦେଖିଲେ ଅଭୟବାବୁ ତାଙ୍କପାଇଁ ଟି’ ବରାଦ୍ କରିବାକୁ ଯାଇ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି । ପାଶବୁକଟି ଓଲଟାଇ ଓଲଟାଇ ଦେଖିବାକୁ ଲଗିଲେ । ପ୍ରତିମାସରେ ବେଶ୍ ମୋଟା ଟଙ୍କା ଡ଼ିପୋଜିଟ୍ ହୋଇଛି । ବହିଟାକୁ ବନ୍ଦ କରିଦେଲେ । ପଦଶବ୍ଦ ଶୁଭୁଛି । ଅଭୟ ବାବୁ ବୋଧହୁଏ ଟି’-ର ବରାଦ କରି ଫେରିଲେ ।

ଉଠୁଥିଲେ କମଳାପତି, ଅଭୟ ବାବୁ କହିଲେ—ବସନ୍ତୁ, ବେହେରା ଟି’-ନେଇ ଆସୁଛି···

ଧନ୍ୟବାଦ ! ଟି’ ଖାଇବାର ମୋର ଇଚ୍ଛା ନାହିଁ । ଆପଣଙ୍କୁ ଅକାରଣରେ କଷ୍ଟ ଦେଲି ବୋଲି ଦୁଃଖିତ ।

ଆଉ ବସିଲେ ନାହିଁ ସେ । ଟଳି ଟଳି ଆସିଲେ ବାହାରକୁ । ଗେଟ୍‌ରେ ଦରଓ୍ୱାନ ଥିଲା । ପକେଟରୁ ମନିବ୍ୟାଗ୍ ବାହାରକରି ଖଣ୍ଡିଏ ଟଙ୍କାକିଆ ନୋଟ୍ କାଢ଼ି ଦରଓ୍ୱାନକୁ ଦେଇ ପଚାରିଲେ—ତୁମେ କାଲି ଡ଼ିଉଟିରେ ଥିଲ ?—

ଆଜ୍ଞା ହଜୁର···

କାଲି ତୁମେ କୌଣସି ସ୍ତ୍ରୀଲୋକଙ୍କୁ ବାହାରକୁ ଯିବାର ଦେଖିନାହିଁ ?

ଲଜ୍ଜିତ କଣ୍ଠରେ ଦରଓ୍ୱାନ କହିଲା—କାଲି ସନ୍ଧ୍ୟାବେଳେ ପଟ୍ଟନାୟକ ବାବୁଙ୍କର କିଏ ଜଣେ ବନ୍ଧୁ ଆସିଥିଲେ । ସେ ଖଣ୍ଡିଏ ଦୁଇ-ଟଙ୍କିଆ ନୋଟ୍ ଦେଇଥିଲେ, ସେଇ ଉପୁରି ଟଙ୍କାରେ ଟିକିଏ ଖଟିରେ ବସି ଯାଇଥିଲି ।

ଆଉ କିଛି ନପଚାରି ଫେରି ଆସିଥିଲେ କମଳାପତି ଚୌଧୁରୀ ।

ଅଭୟ ବାବୁଙ୍କର ବନ୍ଧୁ—ପାଣି ବୁକ୍‌ରେ ମୋଟା ଟଙ୍କା ଜମା, ସେଥିର ସ୍ଲିପ୍ ଅଭୟ ବାବୁଙ୍କ ଜମାରେ ଥାଏ—ଊର୍ମିଳାର ଠିକଣା ଭୁଲ୍, ସବୁ ଯେପରି ରହସ୍ୟର ଉପାଦାନ ବାଢ଼ି ଦେଉଛି ତାଙ୍କର ଦୃଷ୍ଟି ସମ୍ମୁଖରେ।

ଆଉ ସେ ଭାବି ପାରିଲେ ନାହିଁ। ଆଗେ ଲଳିତା ଉଦ୍ଧାର ପାଇଆସୁ, ତାପରେ ତାଙ୍କର ବନ୍ଧୁ ଗୁଇନ୍ଦା ବିକାଶ ଚୌଧୁରୀଙ୍କୁ ସବୁକଥା ଜଣାଇବେ। ବିକାଶ ନିଶ୍ଚୟ ରହସ୍ୟ ଉଦ୍‌ଘାଟନ କରିପାରିବ…

ରାଜଦୂତରେ ଫେରୁଥିଲା ବିକାଶ। ହଠାତ୍ ବାଇକଟାକୁ ବ୍ରେକ କରି ଛିଡ଼ା ହୋଇଗଲା। ଅତି ସୁନ୍ଦର ଗୋଟିଏ ପ୍ରାସାଦ ଲୋକାଳୟର ବାହାରେ। ଅନେକବାର ଏ ରାସ୍ତାରେ ସେ ଆସିଛି, ମାତ୍ର ବର୍ଷେ ହେଲା ଏ ଦିଗରେ ତା'ର ଗୋଡ଼ ପଡ଼ିନାହିଁ—ଏହାଭିତରେ ଏତେ ମନୋରମ ପ୍ରାସାଦଟି କିଏ ଗଢ଼ି ତୋଳିଛି ?

ହଠାତ୍ ଦୂରରୁ ଖଣ୍ଡିଏ କାର ଆସୁଥିବାର ଦେଖାଗଲା। ବିକାଶ "ରାଜଦୂତ"ଟାକୁ ରାସ୍ତା କଡ଼କୁ ନେଇଆସି ଝଟକେ ଗୋଟିଏ ଗଛର ଆଢ଼ୁଆଳରେ ଲୁଚିଗଲା। କାର୍ ଖଣ୍ଡିକ ପ୍ରାସାଦର ଗେଟ୍ ପାଖକୁ ଆସିବା-ମାତ୍ରେ ଭିତରୁ ଜଣେ ଦରୱାନ ଆସି ଗେଟ୍ ପାଖରେ ଠିଆ ହେଲା। ଦୀର୍ଘ ନମସ୍କାରଟିଏ କାରର ମାଲିକକୁ ଉପହାର ଦେଇ କାନ୍ଥର ଡାହାଣ ପଟକୁ ଆସି ଗୋଟିଏ ଚକ ସଦୃଶ ଯନ୍ତ୍ରକୁ ଦୁଇଥର ବୁଲାଇଦେଲା ଓ ପୁଣି ବାଁ ପାଖକୁ ଆସି ସେଠାକାର କାନ୍ଥରେ ଥିବା ଅନୁରୂପ ଗୋଟାଏ ଚକକୁ ଥରେ ଘୂରାଇଦେବା ମାତ୍ରେ ଗେଟ୍‌ଟି ସମ୍ପୂର୍ଣ୍ଣ ଖୋଲିଗଲା ଓ କାରଟି ଅନତି ବିଳମ୍ବେ ଭିତରକୁ ଆସିବା ପରେ ପୁନରାୟ ଫାଟକଟି ପୂର୍ବପରି ବନ୍ଦ ହୋଇଗଲା।

ବିକାଶ ସ୍ତମ୍ଭିତ। ତାର ଯେପରି ମନେ ପଡ଼ୁଛି ଏହି ଅଦ୍ଭୁତ କାରିଗରୀ ପୂର୍ଣ୍ଣ ଫାଟକପରି ଗୋଟିଏ ଫାଟକ ସେ ଦେଖିଛି। କିନ୍ତୁ କେଉଁଠି, କେବେ ଦେଖିଛି ମନେ ପଡ଼ୁନା ତାର। ବିକାଶ ବାଇକଟିକୁ ବାହାର କରି ଧୀରେ ଧୀରେ ଚଲାଇ ଚଲାଇ ମନେ ପକାଇବାକୁ ଚେଷ୍ଟା କଲା।

ରାତିସାରା ଚିନ୍ତା କରିଛି ବିକାଶ ଏହି ଅଦ୍ଭୁତ ଦର୍ଶନ ଫାଟକ ସମ୍ବନ୍ଧରେ । କେବେ ସେ କେଉଁଠି ଦେଖିଛି । କେବେ, କେଉଁଠି ?

ରାତି ଶେଷ ପହରର ବେଳକୁ ମନେ ପଡ଼ିଲା ତାର । ପାଇଛି, ପାଇଛି ସେ । ରାମହରି ସାମନ୍ତରାୟ । ବିଜ୍ଞାନୀ ରାମହରି ସାମନ୍ତରାୟ । ଏଥର ପୁଣି କାହା ମୁଣ୍ଡରେ ପଣସ ଭାଙ୍ଗିବାକୁ ବସିଛି ? ତାଙ୍କର ଚକ୍ରାନ୍ତ ସେ ଭେଦ କରିବ ଏଥର । ରାମହରି ସାମନ୍ତରାୟଙ୍କୁ ପଳାଇବାର ସୁଯୋଗ କେବେ ଦେବ ନାହିଁ ।

ଶଯ୍ୟାରୁ ଧଡ଼ପଡ଼ ହୋଇ ଉଠିବସିଲା । ନିତ୍ୟକର୍ମ ଶେଷ କରି ଛଦ୍ମବେଶ ଧାରଣ କରୁଛି, ଇନସ୍ପେକ୍ଟର ସୁଦୀପ ଆସି ପହଞ୍ଚିଲେ ।

ଏ ବେଶ ପୁଣି କାହାପାଇଁ, ବିକାଶବାବୁ !

ଅତୀତର ଏକ ବନ୍ଧୁ ପାଇଁ···ହସି ହସି କହିଲେ ବିକାଶ । କହିଲା ଅତୀତର କଥା, ବର୍ତ୍ତମାନ କେଉଁଠାକୁ ଯାଉଛି ତାହା ମଧ୍ୟ ଅକପଟରେ କହିଲା ଲାଲ ବଜାର ପୋଲିସ ଗୋଇନ୍ଦା ଇନସ୍ପେକ୍ଟର ସୁଦୀପ ସେନଙ୍କ ଆଗରେ ।

ଅଧଘଣ୍ଟା ଭିତରେ ବିକାଶ ଯଥାସ୍ଥାନରେ ପହଞ୍ଚି ଫାଟକ ନିକଟବର୍ତ୍ତୀ ଗୋଟିଏ ଗଛ ମୂଳରେ ବସି ଭିକ୍ଷା ଝୁଲିଟିକୁ ସାମନାରେ ରଖିଲା ।

ଦିନ ପ୍ରାୟ ଶେଷ ହେବାକୁ ବସିଛି । କାହାରି ଦେଖା ସେ ଏ ପର୍ଯ୍ୟନ୍ତ ପାଇନାହିଁ । ଆଜି କଣ ଦିନଟା ତାହାହେଲେ ବୃଥାରେ ଯିବ ?

ଦୂରରୁ ଗୋଟାଏ ଶବ୍ଦ ଶୁଣାଗଲା । ପ୍ରସ୍ତୁତ କରିନେଲା ନିଜକୁ ବିକାଶ । କାର୍ ଖଣ୍ଡିଏ ଆସୁଛି । ଭିକାରୀର ଭାଷା ଓ କଣ୍ଠସ୍ୱର ମୂର୍ତ୍ତ ହୋଇ ଉଠିଲା ତାର କଣ୍ଠରେ । କାର୍‌ରୁ ଓହ୍ଲାଇ ପଡ଼ିଲା ଚାଳକ । ଡ୍ରାଇଭର ପୋଷାକ ଦେହରେ । ପକେଟରେ ହାତ ଭର୍ତ୍ତିକରି ଗୋଟାଏ ମୁଦ୍ରା ବାହାର କରି ପକାଇ ଦେଲା ଭିକ୍ଷା ଝୁଲିରେ, ତାପରେ ମଟରରେ ଷ୍ଟାର୍ଟ ଦେଲା ।

କାର ଖଣ୍ଡିକ ଚାଲିଯିବା ପରେ ବିକାଶ ଆଖି ମେଲାଇଲା ! ଏ କାଗଜ ଖଣ୍ଡିକ କଣ ଚାଳକର ପକେଟ୍‌ରୁ ଖସି ପଡ଼ିଛି ! ଚାରିଆଡ଼େ ଆଖି ବୁଲାଇ ନେଲା ସେ । କେହି କେଉଁଠାରେ ନାହିଁ । କାଗଜଖଣ୍ଡିକ ମଧ୍ୟ ଗୋଟ୍

ଅନ୍ଧକାର ଘର ଭିତରେ ଅଦୃଶ୍ୟ ହୋଇଛୁ । ଉଠିଆସି କାଗଜ ଖଣ୍ଡିକ ଉଠାଇ ନେଇ ଖୋଲିଲି । ତାର ନାମଟି ସଙ୍କେତ ଚିଠିର କାଗଜରେ—

ପ୍ରିୟ ବିକାଶ ବାବୁ । ଆପଣଙ୍କର ସାମାନ୍ୟ ଭୁଲ୍ ଯୋଗୁଁ ଧରାପଡ଼ିଛନ୍ତି । ବିକାଶ ସୁଗନ୍ଧ ତେଲ ଲଗାଏ ଏ ଧାରଣା ମୋର ନଥିଲା । ଆଉ ଗୋଟିଏ ଗୁପ୍ତସ୍ଥାନ ଅଛି ଆପଣ ତାହା ଜାଣନ୍ତି ନାହିଁ । ଗତକାଲି ଆପଣଙ୍କୁ ଦେଖିଛି । ବୁଝି ପାରିଥିଲି ଆପଣ ଆସିବେ । ତେଣୁ ପ୍ରସ୍ତୁତ ଥିଲି । ସେହି ଗୁପ୍ତ ରାସ୍ତାରେ ଆସି ଆପଣଙ୍କୁ ଦେଖିଛି । ପ୍ରଥମେ ଅବଶ୍ୟ ଚିହ୍ନି ପାରିନଥିଲି, କିନ୍ତୁ ଆପଣ ସୁଗନ୍ଧ ତେଲ ଲଗାଇ ଆସିଥିବାରୁ, ଧରା ପଡ଼ିଗଲେ । ମୋତେ ଧରିବା ଲାଗି ଚେଷ୍ଟା କରିବେ ନାହିଁ । ଆପଣଙ୍କୁ ଚାଲିବା ପରେ ସେଇ ଗୁପ୍ତ ରାସ୍ତାଦେଇ ମୁଁ ପଳାୟନ କରିଛି ଅଜ୍ଞାତ ସ୍ଥାନକୁ । ପ୍ରାସାଦ ମଧ୍ୟରେ ଯେତେପ୍ରକାର ବିଜ୍ଞାନର କାରିଗରୀ ଅଛି ମୋ ର ଡ୍ରାଇଭର ବୋଧହୁଏ ସବୁଗୁଡ଼ିକ ନଷ୍ଟକରି ସାରିବଣି । ଆପଣ ଆଉ କଷ୍ଟ-ସ୍ୱୀକାର କରିବେ ନାହିଁ । ପ୍ରାସାଦ ଶୂନ୍ୟ । ଗାଡ଼ିଟି ମଧ୍ୟ ପୋଡ଼ି ପାଉଁଶ ହୋଇଯିବଣି । ଏଥର ମୁଁ ଆହ୍ୱାନ ଜଣାଇଥିଲି ଶିଳ୍ପପତି କମଳାପତି ଚୌଧୁରୀଙ୍କୁ । ଆଶିଂକ ସଫଳ ହୋଇଛି । ପୁଣି ଦିନେ ତାଙ୍କ ସହିତ ମୁଲାକାତ ହେବ ।

କମଳାପତିଙ୍କ କନ୍ୟା ଆଜ ସନ୍ଧ୍ୟାବେଳେ ଘରେ ପହଞ୍ଚିବ । ଟଙ୍କା ମୁଁ ପାଇଛି । ଉର୍ମିଳା, ଶଙ୍କର ଦାସ, ଅଭୟ ପଟ୍ଟନାୟକ ପ୍ରଭୃତିଙ୍କୁ ଖୋଜିବାଲାଗି ବ୍ୟର୍ଥ ଚେଷ୍ଟା କରିବେ ନାହିଁ ।

ରହିଲି । ନମସ୍କାର ନେବେ । ପୁଣି ମୁଁ ଆସିବ, ମୋର ଆହ୍ୱାନବାର୍ତ୍ତା ପାଇବେ ।

…ଆପଣଙ୍କ ରମହର ସାମନ୍ତରା ।



---

## ପରବର୍ତ୍ତୀ ଆକର୍ଷଣ

# ଅଞ୍ଜନ ଗଡ଼ର ବୋହୂରାଣୀ